# ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ହୃଦାନନ୍ଦ ରାୟ



ଓଡ଼ିଶା ସାହିତ୍ୟ ଏକାଡେମୀ

# ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ଶ୍ରୀ ହୃଦାନନ୍ଦ ରାୟ



ଓଡ଼ିଶା ସାହିତ୍ୟ ଏକାଡେମୀ

# ବିଛନ୍ଦଚରଣ ପଟ୍ଟନାୟକ

ଲେଖକ :

**ଶ୍ରୀ ହୃଦାନନ୍ଦ ରାୟ**

ପ୍ରକାଶକ :

**ଓଡ଼ିଶା ସାହିତ୍ୟ ଏକାଡେମୀ**

ଭୁବନେଶ୍ୱର-୧୪

ପ୍ରଥମ ମୁଦ୍ରଣ : ଡିସେମ୍ବର ୧୯୯୦

ମୁଦ୍ରଣ :

ସପ୍ତର୍ଷି ପ୍ରିଣ୍ଟର୍ସ

ମଧୁପାଟଣା, କଟକ-୧୦

ମୂଲ୍ୟ : ୨୦-୦୦

# BICHHANDA CHARAN PATTANAIK

*Written by* :

**Sri Hrudananda Ray**

*Published by* :

**Orissa Sahitya Akademi**

Bhubaneswar—14

First Edition :

December-1990

*Printed at* :

**Saptarshi Printers**

Cuttack-753010

**Price ; Rupees twenty only**

# ମୁଖବନ୍ଧ

କବି ବିଚ୍ଛନ୍ଦ ଚରଣ ପଟ୍ଟନାୟକ (୧୯୦୧—୧୯୭୧) ଜଣେ ସ୍ୱାଭିମାନୀ, ସ୍ୱଜାତିପ୍ରେମୀ, ଆଦର୍ଶବାଦୀ ଓ ନିଷ୍ଠାପର ସାହିତ୍ୟ-ସାଧକ ଭାବରେ ଉତ୍କଳୀୟ ଜନମାନସରେ ସଞ୍ଜୀବିତ ହୋଇ ରହିଛନ୍ତି । ସାହିତ୍ୟ ସୃଷ୍ଟି ଓ ସଂଗଠନ କ୍ଷେତ୍ରରେ ସେ ଜଣେ ବିରଳ ବ୍ୟକ୍ତିତ୍ୱ । ଯେତେବେଳେ ଓଡ଼ିଶାର କବି ଲେଖକମାନେ ପାଶ୍ଚାତ୍ୟ ସାହିତ୍ୟ ଓ ସଂସ୍କୃତିର ଅନ୍ଧ ଅନୁକରଣ କରି ନିଜସ୍ୱ ଗୌରବମୟ ପ୍ରାଚୀନ ପରଂପରା, ସଂସ୍କୃତି ଓ ସାହିତ୍ୟ ପ୍ରତି ବୀତସ୍ପୃହ ହୋଇ ଉଠିଛନ୍ତି, ସେତିକି ବେଳେ ବିଚ୍ଛନ୍ଦ ଚରଣ ଓଡ଼ିଶାର କଳା-ସଙ୍ଗୀତମୟ ପରମ୍ପରା ଓ ପ୍ରାଚୀନ ସାହିତ୍ୟର ପୁନଃପ୍ରତିଷ୍ଠା ପାଇଁ ଆଜୀବନ ସଂଗ୍ରାମ କରି ଆସିଛନ୍ତି । ଓଡ଼ିଶାର ମହିମାନ୍ୱିତ ପରଂପରାକୁ ଯଥାଯୋଗ୍ୟ ସମ୍ମାନ ଦେବା ତାଙ୍କର ଏକମାତ୍ର ଧ୍ୟାନ, ଧର୍ମ ଓ କାମ୍ୟ ଥିଲା ।

କଳିଙ୍ଗ-ଭାରତୀ ଓ ଉତ୍କଳ-ଗ୍ରନ୍ଥ-ସାହିତ୍ୟ ସମାଜର ପ୍ରତିଷ୍ଠାତା-ସଭାପତି ଭାବରେ ବିଚ୍ଛନ୍ଦ ଚରଣ ଓଡ଼ିଆ ସାହିତ୍ୟର ସାଂଗଠନିକ ବିକାଶ ଦିଗରେ ଜଣେ ଅଗ୍ରଗାମୀ ସାଧକ, ଏଥିରେ ସନ୍ଦେହ ନାହିଁ । ଉକ୍ତ ଅନୁଷ୍ଠାନ ପକ୍ଷରୁ ଭକ୍ତ-ଜୟନ୍ତୀ ରୂପକ ସାରସ୍ୱତ ମହୋତ୍ସବର ପ୍ରବର୍ତ୍ତନ ଦ୍ୱାରା ସେ ଓଡ଼ିଆ ପ୍ରାଣରେ ବଳିଷ୍ଠ ଆତ୍ମ-ଚେତନା ଉଦ୍ରେକ କରିବା ସଙ୍ଗେ ସଙ୍ଗେ ପ୍ରାଚୀନ ପରଂପରା ସାହିତ୍ୟ ପ୍ରତି ପ୍ରୀତି ସଞ୍ଚାର କରିବା ପାଇଁ ସଂକଳ୍ପବଦ୍ଧ ଭାବରେ ଉଦ୍ୟମ କରିଯାଇଛନ୍ତି । ଉତ୍କଳୀୟ ସାଂସ୍କୃତିକ ଜୀବନର ପୁନର୍ଜାଗରଣ ପାଇଁ ତାଙ୍କର ମହନୀୟ ପ୍ରଚେଷ୍ଟା ବାସ୍ତବିକ ଅଭିନନ୍ଦନୀୟ । ବିଭିନ୍ନ ରାଗରାଗିଣୀ-ସମନ୍ୱିତ ଓଡ଼ିଶୀ ସଙ୍ଗୀତ ଏବଂ ଛାନ୍ଦ, ଚମ୍ପୂ, ଚଉପଦୀ ଆଦି ପ୍ରାଚୀନ ଓ ମଧ୍ୟଯୁଗୀୟ କାବ୍ୟ-କବିତାର ବିପୁଳ ସମ୍ଭାର ପ୍ରତି ନବ୍ୟ ସଭ୍ୟ ଉତ୍କଳୀୟଙ୍କର ଦୃଷ୍ଟିକୋଣ ପରିବର୍ତ୍ତନ ଓ ଅନୁରକ୍ତି ସୃଷ୍ଟିର ପଶ୍ଚାଦ୍‌ଭାଗରେ ବିଚ୍ଛନ୍ଦବାବୁଙ୍କ ଅନୁପ୍ରେରଣା ନିଶ୍ଚିତ ଭାବେ ବିଦ୍ୟମାନ, ଏହା ଅନସ୍ୱୀକାର୍ଯ୍ୟ ।

ବିଚ୍ଛନ୍ଦ ଚରଣ କେବଳ ସାହିତ୍ୟ-ସଙ୍ଗଠକ ନଥିଲେ ; ସେ ଥିଲେ ଏକଧାରରେ ଜଣେ ସଫଳ କବି, ସମାଲୋଚକ, ଅନୁବାଦକ ଓ ସମ୍ପାଦକ । କବିତା-କୁମୁଦ' ଶୀର୍ଷକ କବିତା ସଙ୍କଳନ ତାଙ୍କର କାବ୍ୟିକ ପ୍ରତିଭାର ସ୍ୱାକ୍ଷର ବହନ

କରେ । ତୁଳସୀ ବନସ୍ତ ପତ୍ରିକା, ସଂସ୍କୃତ ଅମରୁଶତକ, ସେକ୍ସପିୟରଙ୍କ କଥାମାଳାର ଓଡ଼ିଆ ଭାଷାନ୍ତର କରି ସେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ସାଧନ କରିଛନ୍ତି ।

ପ୍ରାଚୀ ସମିତିର ସଂସ୍ଥାପକ ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରାଚୀଗ୍ରନ୍ଥମାଳା, ସଂକଳନ, ସମ୍ପାଦନା, ମୁଦ୍ରଣ ଓ ପ୍ରକାଶନ କାର୍ଯ୍ୟରେ ବିଚ୍ଛନ୍ଦ ଚରଣ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ଥିଲେ । ପ୍ରାଚୀସମିତିର ସମ୍ପାଦକ ଭାବରେ ସେ ପ୍ରାଚୀ ପ୍ରେସ୍‌ରେ ଉପସ୍ଥିତ ପ୍ରକାଶନ କାର୍ଯ୍ୟରେ ଲିପ୍ତ ରହୁଥିଲେ ଏବଂ ପ୍ରାଚୀ ଗ୍ରନ୍ଥମାଳାର ବହୁ ପୁସ୍ତକରେ ସଂଯୋଜିତ ସାରଗର୍ଭକ ମୁଖବନ୍ଧ ତାଙ୍କର ସୁସମ୍ପାଦନାର ସ୍ୱାକ୍ଷର ବହନ କରିପାରିଛି ।

ଉଭୟ ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ଥିଲା । ପ୍ରାଚୀସମିତି ପକ୍ଷରୁ ପ୍ରକାଶିତ 'ପ୍ରାଚୀ' ଇଂରାଜୀ ତ୍ରୈମାସିକ ପତ୍ରିକାର ସୁଯୋଗ୍ୟ ସମ୍ପାଦକ ଭାବରେ ସେ ରାଜ୍ୟ ତଥା ଦେଶ ବିଦେଶରେ ସୁଖ୍ୟାତି ଅର୍ଜନ କରି ପାରିଥିଲେ । ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗ ପକ୍ଷରୁ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶାରିଭ୍ୟୁ'ର ସମ୍ପାଦନା ଦାୟିତ୍ୱ ମଧ୍ୟ ସେ ବହନ କରିଥିଲେ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସଂକଳନରେ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ସେ ପ୍ରଧାନ ସହାୟକ ଭାବରେ କାର୍ଯ୍ୟ କରିଥିଲେ । ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତି ବିଚ୍ଛନ୍ଦ ଚରଣଙ୍କ ନିସ୍ୱାର୍ଥପର ସାହିତ୍ୟସେବା ସମ୍ପର୍କରେ କହନ୍ତି — "ବିଚ୍ଛନ୍ଦ ସାହିତ୍ୟ ରସିକ ଥିବାରୁ ମୋର ପ୍ରାଚୀନ ସାହିତ୍ୟ ଉଦ୍ଧାର ଏବଂ ଉତ୍କଳୀୟ ପ୍ରାଚୀନ କବିମାନଙ୍କର ଗୌରବ ପ୍ରକାଶ କରିବା ଧର୍ମ ସେ ପୂର୍ଣ୍ଣତଃ ଅବଲମ୍ବନ କରି ଲାବଣ୍ୟବତୀ ତଥା ମନବୋଧ ଚଉତିଶା ଆଦି କାବ୍ୟ-କବିତା ଇଂରାଜୀ ଭାଷାରେ ଅନୁବାଦ କରି ଓଡ଼ିଆ ସାହିତ୍ୟର ଐତିହ୍ୟକୁ ବୃହତ୍ତର ପାଠକ- ସମାଜ ସମକ୍ଷରେ ଉପସ୍ଥାପିତ କରିଛନ୍ତି ।" ବିଚ୍ଛନ୍ଦ ଚରଣଙ୍କର ଏପରି ସାହସିକ ସାହିତ୍ୟିକ ପଦକ୍ଷେପ ବାସ୍ତବିକ ପ୍ରଶଂସନୀୟ । ଓଡ଼ିଆ ଜାତିର ସ୍ୱାଭିମାନ ରକ୍ଷା ଓ ପ୍ରାଚୀନ ଓଡ଼ିଆ ଭାଷା, ସାହିତ୍ୟ ସଂସ୍କୃତି ଓ ପରମ୍ପରର ପୁନଃପ୍ରତିଷ୍ଠା କଲେ ତାଙ୍କର ସାଧୁ ଉଦ୍ୟମ ପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ ।

ଏହି ମନୋଗ୍ରାଫ୍‌ର ରଚୟିତା ଶ୍ରୀ ହୃଦାନନ୍ଦ ରାୟ ଜଣେ ସୁସାହିତ୍ୟିକ ଓ ସୁବକ୍ତା ଭାବରେ ପରିଚିତ । ଶ୍ରୀ ରାୟ ବିଚ୍ଛନ୍ଦବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ଜଣେ

କରେ । ତୁଳସୀ ବସନ୍ତ ପତ୍ରିକା, ସଂସ୍କୃତ ଅମରୁଶତକ, ସେକ୍ସପିୟରଙ୍କ କଥା-ମାଳାର ଓଡ଼ିଆ ଭାଷାନ୍ତର କରି ସେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ସାଧନ କରିଛନ୍ତି ।

ପ୍ରାଚୀ ସମିତିର ସଂସ୍ଥାପକ ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରାଚୀଗ୍ରନ୍ଥମାଳା, ସଙ୍କଳନ, ସମ୍ପାଦନା, ମୁଦ୍ରଣ ଓ ପ୍ରକାଶନ କାର୍ଯ୍ୟରେ ବିଚ୍ଛନ୍ଦ ଚରଣ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ଥିଲେ । ପ୍ରାଚୀସମିତିର ସମ୍ପାଦକ ଭାବରେ ସେ ପ୍ରାଚୀ ପ୍ରେସ୍‌ରେ ତତ୍ସମିତି ପ୍ରକାଶନ କାର୍ଯ୍ୟରେ ଲିପ୍ତ ରହୁଥିଲେ ଏବଂ ପ୍ରାଚୀ ଗ୍ରନ୍ଥମାଳାର ବହୁ ପୁସ୍ତକରେ ସଂଯୋଜିତ ସାରଗର୍ଭକ ମୁଖବନ୍ଧ ତାଙ୍କର ସୁସମ୍ପାଦନାର ସ୍ୱାକ୍ଷର ବହନ କରିପାରନ୍ତି ।

ଉଭୟ ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ତାଙ୍କର ଗଭୀର ବ୍ୟୁତ୍ପତ୍ତି ଥିଲା । ପ୍ରାଚୀସମିତି ପକ୍ଷରୁ ପ୍ରକାଶିତ 'ପ୍ରାଚୀ' ଇଂରାଜୀ ତ୍ରୈମାସିକ ପତ୍ରିକାର ସୁଯୋଗ୍ୟ ସମ୍ପାଦକ ଭାବରେ ସେ ରାଜ୍ୟ ତଥା ଦେଶ ବିଦେଶରେ ସୁଖ୍ୟାତି ଅର୍ଜନ କରି ପାରିଥିଲେ । ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗ ପକ୍ଷରୁ ପ୍ରକାଶିତ 'ଉତ୍କଳ ପ୍ରସଙ୍ଗ' ଓ 'ଓଡ଼ିଶା ରିଭ୍ୟୁ'ର ସମ୍ପାଦନା ଦାୟିତ୍ୱ ମଧ୍ୟ ସେ ବହନ କରିଥିଲେ ।

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସଂକଳନରେ ସାରସ୍ୱତ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ସେ ପ୍ରଧାନ ସହାୟକ ଭାବରେ କାର୍ଯ୍ୟ କରିଥିଲେ । ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତି ବିଚ୍ଛନ୍ଦ ଚରଣଙ୍କ ନିଃସ୍ୱାର୍ଥପର ସାହିତ୍ୟସେବା ସମ୍ପର୍କରେ କହନ୍ତି — "ବିଚ୍ଛନ୍ଦ ସାହିତ୍ୟ ରସିକ ଥିବାରୁ ମୋର ପ୍ରାଚୀନ ସାହିତ୍ୟ ଉଦ୍ଧାର ଏବଂ ଉତ୍କଳୀୟ ପ୍ରାଚୀନ କବିମାନଙ୍କର ଗୌରବ ପ୍ରକାଶ କରିବା ଧର୍ମ ସେ ପୂର୍ଣ୍ଣତଃ ଅବଲମ୍ବନ କରି ଲାବଣ୍ୟବତୀ ତଥା ମନବୋଧ ଚଉତିଶା ଆଦି କାବ୍ୟ-କବିତା ଇଂରାଜୀ ଭାଷାରେ ଅନୁବାଦ କରି ଓଡ଼ିଆ ସାହିତ୍ୟର ଐତିହ୍ୟକୁ ବୃହତ୍ତର ପାଠକ- ସମାଜ ସମକ୍ଷରେ ଉପସ୍ଥାପିତ କରିଛନ୍ତି ।" ବିଚ୍ଛନ୍ଦ ଚରଣଙ୍କର ଏପରି ସାହସିକ ସାରସ୍ୱତ ପଦକ୍ଷେପ ବାସ୍ତବିକ ପ୍ରଶଂସନୀୟ । ଓଡ଼ିଆ ଜାତିର ସ୍ୱାଭିମାନ ରକ୍ଷା ଓ ପ୍ରାଚୀନ ଓଡ଼ିଆ ଭାଷା, ସାହିତ୍ୟ ସଂସ୍କୃତି ଓ ପରମ୍ପରାର ପୁନଃପ୍ରତିଷ୍ଠା କଲେ ତାଙ୍କର ସାଧୁ ଉଦ୍ୟମ ପାଇଁ ସେ ଚିରସ୍ମରଣୀୟ ହୋଇ ରହିବେ ।

ଏହି ମନୋଗ୍ରାଫ୍‌ର ରଚୟିତା ଶ୍ରୀ ହୃଦାନନ୍ଦ ରାୟ ଜଣେ ସୁସାହିତ୍ୟିକ ଓ ସୁବକ୍ତା ଭାବରେ ପରିଚିତ । ଶ୍ରୀଯୁକ୍ତ ବିଚ୍ଛନ୍ଦବାବୁଙ୍କ ଆଦର୍ଶରେ ଅନୁପ୍ରାଣିତ ଜଣେ

ଅନୁଗାମୀ ଶିଷ୍ୟ ଭାବରେ କଳିଙ୍ଗ ଭାରତୀ ଅନୁଷ୍ଠାନ ସହ ଓତପ୍ରୋତ ଭାବେ ଜଡ଼ିତ । ତାଙ୍କ ଅନୁପ୍ରେରଣାରେ ସେ ଉତ୍କଳ-ଗ୍ରନ୍ଥ-ସାହିତ୍ୟ ସମାଜ ଗଠନ ପରେ ଏହାର ସଂଗଠନ-ପ୍ରବର୍ତ୍ତକ ଭାବରେ କାର୍ଯ୍ୟ କରି ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଶାଖାମାନ ସ୍ଥାପନ କରିଥିଲେ । ବିଚ୍ଛନ୍ଦବାବୁଙ୍କ ସହ ତାଙ୍କର ଘୋର ସାନ୍ନିଧ୍ୟ ଓ ସାହଚର୍ଯ୍ୟ ଫଳରେ ଏହି ଗ୍ରନ୍ଥ ରଚନା ଦାୟିତ୍ୱ ସେ ସୁଚାରୁ ରୂପେ ସମ୍ପନ୍ନ କରି ପାରିଛନ୍ତି । ବିଚ୍ଛନ୍ଦ ଚରଣଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭା ସମ୍ବଳିତ ଏହି ଅନୁଭୂତି-ରସାଣିତ ରଚନା ପାଇଁ ଶ୍ରୀ ରାଉତଙ୍କୁ ଏକାଡେମୀ ପକ୍ଷରୁ ସାଧୁବାଦ ଅର୍ପଣ କରୁଛୁ । ଶେଷରେ ସାହିତ୍ୟପ୍ରେମୀ ଜନସାଧାରଣଙ୍କ ଦ୍ୱାରା ପୁସ୍ତକଟି ଆଦୃତ ଲାଭ କରିବ ବୋଲି ମୋର ଆଶା ।

ସମ୍ପାଦକ

**ଇନ୍ଦୁଭୂଷଣ କର**

ଓଡ଼ିଶା ସାହିତ୍ୟ ଏକାଡେମୀ

# ସୂଚୀପତ୍ର





୧

# ଅନୁକ୍ରମଣିକା

ଜାତୀୟ ଐତିହ୍ୟ, ସଂସ୍କୃତି ଓ ସାହିତ୍ୟପାଇଁ ନିତ୍ୟ ଉଦ୍‌ବୁଦ୍ଧ ହୋଇ ରହିଥିବା ଜଣେ ବ୍ୟକ୍ତିଙ୍କର ସ୍ମୃତି ଯଦି କେବେ ଆମ ମାନସ-ଦିଗନ୍ତକୁ ଛୁଇଁଯାଏ, ସେତେବେଳେ ଅତ୍ୟନ୍ତ ଘନିଷ୍ଠ ଭାବରେ ମନେ ପଡ଼ନ୍ତି, କଳିଙ୍ଗ-ପ୍ରାଣ ବିଚ୍ଛନ୍ଦଚରଣ । ଜାତୀୟ ଗୌରବରେ ସେ ସଦା ଉନ୍ମାଦିତ ହୋଇ ରହୁଥିଲେ । ଅତୀତର ଇତିହାସ ତାଙ୍କ ଲାଗି ଅତୀତର ବସ୍ତୁ ହୋଇ ନଥିଲା, ତାହା ଥିଲା ତାଙ୍କ ପାଇଁ ବର୍ତ୍ତମାନର ହୃତ୍‌ସ୍ପନ୍ଦନ । ପୈତୃକ ସମ୍ପତ୍ତି ଯେପରି ଦାୟଭାଗରେ ନିଜସ୍ୱ ସମ୍ପତ୍ତିରେ ରୂପାନ୍ତରିତ ହୋଇଥାଏ, ଏ ଜାତିର ଅତୀତ ସମୃଦ୍ଧି ସେହିପରି ତାଙ୍କ ପାଇଁ ନିଜ ଜୀବନର ତଥା ଚଳନ୍ତି ଇତିହାସର ଅଙ୍ଗୀଭୂତ ସାମଗ୍ରୀ ଓ ସାମର୍ଥ୍ୟରେ ରୂପାନ୍ତରିତ ହୋଇ ଯାଇଥିଲା । ସେ ନିଜ ଭିତରେ ବୀର ଖାରବେଳଙ୍କ ଉପସ୍ଥିତି ଅନୁଭବ କରୁଥିଲେ । କଳାର ସ୍ୱପ୍ନପୁରୀ କୋଣାର୍କ ନିର୍ମାଣ ଲାଗି ଯେଉଁ ଉତ୍ସାହ ଓଡ଼ିଆ ଜାତୀୟ ଜୀବନକୁ ଦିନେ ଉଦ୍‌ବେଳିତ କରିଥିବ, ସେହି ଉତ୍ସାହର ଅନବଦମିତ ସ୍ପନ୍ଦନ ସେ ତାଙ୍କ ଶିରାପ୍ରଶିରାରେ ପ୍ରତ୍ୟକ୍ଷ ଅନୁଭବ କରୁଥିଲେ । ନିଜର ଶାରୀରିକ ଅସାମର୍ଥ୍ୟ ପ୍ରତି ସେ ଆଦୌ ସଚେତନ ନଥିଲେ କିମ୍ବା ବ୍ୟକ୍ତିଗତ ଅତ୍ୟନ୍ତ ସୀମିତ ସମ୍ବଳ ପ୍ରତି ତାଙ୍କର ଭ୍ରୂକ୍ଷେପ ନଥିଲା । ସେ ନିଜକୁ "ମନୋରଥରେ ମହୀପତି" ବୋଲି ଘୋଷଣା କରୁଥିଲେ । ଜାତୀୟ ଇତିହାସ-ନଦୀର ନିରାପଦ ବନ୍ଧ ଉପରେ ଛିଡ଼ା ହୋଇ ସେ ନଦୀସ୍ରୋତକୁ ପର୍ଯ୍ୟବେକ୍ଷଣ କରୁ ନଥିଲେ । ତାଙ୍କୁ ସବୁବେଳେ ବୋଧ ହେଉଥିଲା ଯେ, ଇତିହାସର ମଧ୍ୟ-ସ୍ରୋତରେ ସେ ଭାସୁଛନ୍ତି, ବରଂ ଭାସି ଯାଉଛନ୍ତି । ଅକାତ ପାଣିରେ ଭାସିବା ତାଙ୍କ ସ୍ୱଭାବରେ ପରିଣତ ହୋଇ ଯାଇଥିଲା । ଯେଉଁଠି ଓଡ଼ିଆଙ୍କ ଜାତୀୟ ସ୍ୱାର୍ଥରେ ଆଞ୍ଚ ଆସିବା ସମ୍ଭାବନା ସେ ବୋଧ କରୁଥିଲେ, ସେଠାରେ ପ୍ରୟୋଜନ ପଡ଼ିଲେ ସେ ଆତ୍ମବଳି ଦେବାପାଇଁ ପ୍ରସ୍ତୁତ ହୋଇ ଯାଉଥିଲେ । ଏ ଜାତିର ସଂସ୍କୃତି ଓ ସାହିତ୍ୟ ପାଇଁ ସେ ଅନେକବାର ବିପଦ ବରଣ କରିଛନ୍ତି । ନିଜକୁ, ନିଜର ସ୍ୱଳ୍ପ ଆୟକୁ, ଫଳରେ ପରିବାରକୁ ବିପନ୍ନ ହେବା ଜାଣି ସେ ବିଚଳିତ ବୋଧ କରୁ ନଥିଲେ, ବରଂ ଆତ୍ମପ୍ରସାଦ ଅନୁଭବ କରୁଥିଲେ ଯେ ଜାତିପାଇଁ ଲୋଡ଼ାଯାଉଥିବା ବଳିରେ ସେ ପ୍ରଥମ ହେବା ସୌଭାଗ୍ୟ ଅର୍ଜନ

କରିଛନ୍ତି । ସେ ତାଙ୍କ ଆତ୍ମ-ଜୀବନୀର ନାମକରଣ କରିଥିଲେ, "ସ୍ୱାଧୀନତା ପାଇଁ ସଂଗ୍ରାମ" ।

ସଂଗ୍ରାମୀ ଜୀବନକୁ ସ୍ୱୀକାର କଲେ ଅଙ୍ଗ କ୍ଷତବିକ୍ଷତ ହେବା ସ୍ୱାଭାବିକ ଓ ଏହି କ୍ଷତମାନଙ୍କୁ ଦେହର ଅଳଙ୍କାର ବୋଲି ଗ୍ରହଣ ନକରି କେହି ସଂଗ୍ରାମୀ-ଜୀବନ ନିର୍ବାହ କରିପାରନ୍ତି ନାହିଁ । ଏହି ଅଳଙ୍କାରମାନଙ୍କୁ ଅର୍ଜନ କରିବାକୁ ପଡ଼େ ; ସେଥିପାଇଁ ମୂଲ୍ୟ ଦେବାକୁ ପଡ଼ିଥାଏ । ଜାତୀୟ ପ୍ରୟୋଜନରେ ନିଜ ଜୀବନର ଉତ୍କୃଷ୍ଟ ଦାରିଦ୍ର୍ୟକୁ ଅମୂଲ ମୂଲ ଦେଇ କ୍ରୟ କରିଥିଲେ କୁଳବୃଦ୍ଧ ମଧୁସୂଦନ । ଅନେକ ଅବିସ୍ମରଣୀୟ ଶାଣିତ ଅନୁଭୂତିର ଶୀକାର ହୋଇ ଦେଶସେବା କରୁଥିଲେ ଉତ୍କଳମଣି ଗୋପବନ୍ଧୁ । ଦେଶପ୍ରେମୀମାନଙ୍କ ମଧ୍ୟରୁ ଦେଶ ଓ ଜାତିପାଇଁ କେହି ନିର୍ବାସିତ ହେଲେ ତ, କେହି ଗୁଳି ଗ୍ରେଣ୍ଟରେ ପ୍ରାଣ ଦେଲେ । କେହି ସର୍ବସ୍ୱ ହରାଇଲେ ତ କେହି ଫାଶୀ ଖୁଣ୍ଟରେ ଝୁଲିଲେ । ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବା ଦେଶପ୍ରାଣ ବୀରପୁରୁଷମାନଙ୍କ ଜୀବନୀ ଓ ଆଦର୍ଶ ସେତେବେଳେ ଯୁବଗୋଷ୍ଠୀକୁ ନାନାମତେ ଅନୁପ୍ରେରିତ କରୁଥାଏ । ଦେଶର ବାତାବରଣକୁ ସଂଗ୍ରାମ, ଆତ୍ମୋତ୍ସର୍ଗ, ସ୍ୱାଭିମାନୀ ଜାତୀୟତାବୋଧ ଆଚ୍ଛନ୍ନ କରି ରଖିଥାଏ । ଏହି ବାତାବରଣରେ ବିଚ୍ଛନ୍ଦଚରଣ ଜନ୍ମଗ୍ରହଣ କରିଥିଲେ ବୀରଭୂମି ଖୋର୍ଦ୍ଧା ମାଟିରେ ଓ ବିକାଶୋନ୍ମୁଖ ବୟସରେ ଦୁଇବର୍ଷ ଶିକ୍ଷା ଗ୍ରହଣ କରିଥିଲେ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ । ସଂଗ୍ରାମୀ ମନୋଭାବ ତାଙ୍କ ନିଜସ୍ୱ ଚରିତ୍ର ଓ ପ୍ରବୃତ୍ତିରେ ଆଜୀବନ ମୁଦ୍ରାଙ୍କିତ ହୋଇ ରହିଥିଲା । ସ୍ୱଭାବରେ ସେ ଥିଲେ ଜଣେ ନିର୍ଭୀକ ସ୍ୱାଭିମାନୀ ବ୍ୟକ୍ତି । ତାଙ୍କୁ "ଏ ଜାତିର ଅଭିମାନଭରା ପଟେ କଂସା କବାଟ" ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

ସେ ନିଜେ ଯେ ଜାତୀୟ ସ୍ୱାଭିମାନବୋଧରେ ଉନ୍ମାଦିତ ହୋଇ ରହିଥିଲେ ତାହା ନୁହେଁ, ସେ ଅନ୍ୟମାନଙ୍କୁ ତହିଁରେ ଉଦ୍‌ବୋଧିତ କରୁଥିଲେ । ବିଶେଷ କରି ସେକାଳର ତରୁଣ ଗୋଷ୍ଠୀ ତାଙ୍କ ଆଦର୍ଶ ଓ ଭାବଧାରାରେ କିପରି ଅନୁପ୍ରାଣିତ ହେବେ, ଏହା ତାଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା । ଯେଉଁ ଭାବଧାରା ତରୁଣ-ମାନଙ୍କୁ ସ୍ପର୍ଶ କରି ପାରିବ ତାହାରି ହିଁ ଭବିଷ୍ୟତ ଅଛି, ଏକଥା ସେ ଉତ୍ତମ ରୂପେ ବୁଝିଥିଲେ । ତେଣୁ ନିଜଠାରୁ ବୟୋଜ୍ୟେଷ୍ଠ ଅଥବା ନିଜର ସମସାମୟିକ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ଅପେକ୍ଷା ତରୁଣ ସଂପ୍ରଦାୟକୁ ସେ ଅଧିକ ଧ୍ୟାନ ଦେଉଥିଲେ । ସେ ଜାଣିଥିଲେ ଯେ ବୀଜରେ ବୃକ୍ଷ ଲୁକ୍‌କାୟିତ ଥିଲାପରି ଏହି ଅନାମଧେୟ ତରୁଣମାନଙ୍କ ମଧ୍ୟରେ ହିଁ ଭବିଷ୍ୟତର ସମସ୍ତ ପ୍ରତିଭା, ପ୍ରଭାବ ଓ ପ୍ରମୁଖତା ପ୍ରଚ୍ଛନ୍ନ ଭାବରେ ନିହିତ ଅଛି ଓ ଯଥା ସମୟରେ ତାହା ଦ୍ରୁମାକୃତି ଧାରଣ

କରିବ । ହେଲେ ନା ହେଲେ ଏହି ତରୁଣମାନେ ପ୍ରତିଭାଶାଳୀ ହୋଇ ଉଠିବେ ଓ ମେଟ୍ରିକବେଲକୁ ଉପର ଡିଗ୍ରିର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ସେମାନଙ୍କର ସାମାଜିକ ପ୍ରାସଙ୍ଗିକତା ହରାଇ ବସିଥିବେ । ହୁଏତ ସେମାନେ ବିସ୍ମୃତି ଗର୍ଭରେ ଲୀନ ହୋଇ ଯାଇଥିବେ । ଏହାବ୍ୟତୀତ ସେ ବୋଧକରୁଥିଲେ ଯେ ତରୁଣମାନଙ୍କ ବିକାଶଶୀଳ ମନ ଅଧିକ ସଂସ୍କାର-ପ୍ରବଣ । ତେଣୁ ସେମାନଙ୍କୁ ନୂତନ ଭାବଧାରାରେ ଅନୁପ୍ରାଣିତ କରିବା ଅପେକ୍ଷାକୃତ ସହଜ । ବୟସ୍କ ବ୍ୟକ୍ତିମାନେ ପ୍ରତିଷ୍ଠିତ ଧାରଣାରେ ଅଟଳ ରହି ନୂତନ ସଂସ୍କାର ଗ୍ରହଣ କରିବାକୁ ପ୍ରାୟଶଃ ଅକ୍ଷମ ହୋଇଥାନ୍ତି ଓ ଅନିଚ୍ଛା ପ୍ରକାଶ କରନ୍ତି । ପୋଡ଼ା ହାଣ୍ଡି ଅପେକ୍ଷା କଞ୍ଚା ହାଣ୍ଡିକୁ ହିଁ ଭିନ୍ନ ରୂପ ଦେବା କୁମ୍ଭାର ପକ୍ଷରେ ସମ୍ଭବ । ସେ ତରୁଣମାନଙ୍କ ପ୍ରତି ଯେତେ ଉନ୍ମୁଖ ଥିଲେ, ତରୁଣମାନେ ତାଙ୍କ ପ୍ରତି ତତୋଽଧିକ ଉନ୍ମୁଖତା ପ୍ରକାଶ କଲେ । ଅଳ୍ପକାଳ ମଧ୍ୟରେ ଜାତୀୟ ସଂସ୍କୃତି ସଚେତନ ପ୍ରତିଭାଶାଳୀ ବହୁ ତରୁଣ ତାଙ୍କ ବାଣୀ ଓ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଯେଉଁ ଗୋଷ୍ଠୀ ଗଠନ କଲେ, ତାହାକୁ ଗୋଷ୍ଠୀ ନକହି ବରଂ ପରିବାର କହିବା ଅଧିକ ସମୀଚୀନ ହେବ । ସେମାନେ ପରସ୍ପରକୁ 'ଭାଇ' ବୋଲି ସମ୍ବୋଧନ କରୁଥିଲେ, ଓ ସେମାନଙ୍କ ପରିବାରବର୍ଗଙ୍କ ମଧ୍ୟରେ ମଧ୍ୟ ଆତ୍ମୀୟତାର ଲହର ଖେଳି ଯାଇଥିଲା । ବିଚ୍ଛନ୍ଦଚରଣଙ୍କୁ ସେମାନେ ଗଭୀର ଭକ୍ତି ସହିତ 'ଗୁରୁଦେବ' ବୋଲି ସମ୍ବୋଧନ କରୁଥିଲେ ଓ ଗୁରୁଦେବଙ୍କ ପତ୍ନୀଙ୍କୁ 'ମାଉସୀ' ବୋଲି ଡାକୁଥିଲେ । ଏମାନଙ୍କ ମଧ୍ୟରେ ପାରସ୍ପରିକ ପ୍ରତିଦ୍ୱନ୍ଦ୍ୱିତା ବଦଳରେ ଆନ୍ତରିକ ସହଯୋଗିତା ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ନିଜକୁ ଗୁରୁଦେବଙ୍କ ଆଦର୍ଶରେ ଗଢ଼ି ତୋଳିବାପାଇଁ ଏମାନେ ଗ୍ରନ୍ଥ ଅଧ୍ୟୟନ ଓ ପର୍ଯ୍ୟାଲୋଚନାରେ ମନୋନିବେଶ କରୁଥିଲେ । ଗୁରୁଦେବଙ୍କ ବାସଭବନରେ ପ୍ରତିଦିନ ଅପରାହ୍ଣରେ ସମବେତ ହୋଇ ଏମାନେ ଅଧ୍ୟୟନ ଓ ଅଭିଭାଷଣ ଦେବା ଶକ୍ତିର କିପରି ପୂର୍ଣ୍ଣ ବିନିଯୋଗ କରାଯାଇ ପାରିବ ତାହା ଅଭ୍ୟାସ କରୁଥିଲେ । ଜାତୀୟ ସଂସ୍କୃତି ପ୍ରତି ନିଷ୍ଠାହିଁ ସବୁ କର୍ମର ମାନଦଣ୍ଡ ଥିଲା । ପ୍ରାଣପାତ କରି ଜାତୀୟ ସଂସ୍କୃତିର ସୁରକ୍ଷା ଲାଗି ଏମାନେ କଟିବଦ୍ଧ ସମ୍ମିଳିତ ଉଦ୍ୟମରେ ବ୍ରତୀ ହୋଇଥିଲେ । ଗୁରୁଦେବ ଥିଲେ ସକଳ ଉତ୍ସାହ, ପ୍ରେରଣା ଓ ଦିଗ୍‌ଦର୍ଶନର ମୂଳକେନ୍ଦ୍ର । ସେ କହୁଥିଲେ, "ମୋ ପ୍ରତି ବ୍ୟକ୍ତିଗତ ଅନୁରକ୍ତି ଅପେକ୍ଷା ମୁଁ ମୋ ଆଦର୍ଶ ପ୍ରତି ଅନୁରକ୍ତିକୁ ଅଧିକ ମନେକରେ" । କିନ୍ତୁ ଏହି ଦୁଇ ଅନୁରକ୍ତିକୁ ଗୁରୁଦେବଙ୍କ ଶିଷ୍ୟମଣ୍ଡଳୀ ଏକ ଓ ଅଭିନ୍ନ ବୋଲି ମଣୁଥିଲେ ।

ଏହି ଅନୁଗତ ଶିଷ୍ୟମଣ୍ଡଳୀକୁ ନେଇ ପ୍ରଥମେ "ଭାରତ ସାହିତ୍ୟ ସମାଜ" ଓ ପରେ "କଳିଙ୍ଗଭାରତୀ" ଅନୁଷ୍ଠାନ ଗଠିତ ହେଲା । "ଜାତୀୟ ସାହିତ୍ୟ ଓ ସାଂସ୍କୃତିକ ପରମ୍ପରା ପ୍ରତି କାୟମନୋବାକ୍ୟରେ ମୁଁ ଏକାନ୍ତ ଅନୁଗତ ରହିବି"—

ଏହି ଶପଥ ଗ୍ରହଣ କରି ଓ ଶପଥ ପତ୍ରରେ ଦସ୍ତଖତ କରି ଏହି ଦୁଇ ଅନୁଷ୍ଠାନରେ ସଭ୍ୟମାନେ ଗୃହୀତ ହେଉଥିଲେ । ଯେକୌଣସି ସୁଗୁଣ ଓ ପାରଦର୍ଶିତାଠାରୁ ଜାତୀୟ ପ୍ରୀତି ଓ ନିଷ୍ଠାକୁ ଉଚ୍ଚତର ମୂଲ୍ୟ ଦିଆଯାଉଥିଲା । ସକଳ ଦୋଷ କ୍ଷମଣୀୟ ହୋଇପାରେ, କିନ୍ତୁ ନିଷ୍ଠା-ବିମୁଖତାକୁ ଅକ୍ଷମଣୀୟ ଅପରାଧ ବୋଲି ବିବେଚନା କରାଯାଉଥିଲା । 'ମାତ୍ର', "କିନ୍ତୁ", 'ଅଥିଚ' ପ୍ରୟୋଗ କରି ନିଷ୍ଠା ବିଷୟରେ ଉକ୍ତିବା ଜାତୀୟ ସଂସ୍କୃତିର ଅବମାନନା ଓ ନିଷ୍ଠାହୀନତାର ନିଦର୍ଶନ ବୋଲି ଧରାଯାଉଥିଲା ।

ଉତ୍କଳୀୟ ଜାତୀୟ ସଂସ୍କୃତିର ଚରମ ଅଭିବ୍ୟକ୍ତିର ପ୍ରତୀକ ବା ପ୍ରତିନିଧି-ସ୍ୱରୂପେ ଜଗନ୍ନାଥ, କୋଣାର୍କ ଓ ଉପେନ୍ଦ୍ର ଭଞ୍ଜଙ୍କୁ ମୂଲ୍ୟବୋଧର ସର୍ବୋଚ୍ଚ ସ୍ଥାନରେ ଅଧିଷ୍ଠିତ କରାଯାଇଥିଲା । ଅଧ୍ୟାତ୍ମ ଚେତନାରେ ଜଗନ୍ନାଥ, କାରୁଶିଳ୍ପ ଚେତନାରେ କୋଣାର୍କ ଓ ଲିପିଶିଳ୍ପ ଚେତନାରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ଉତ୍କଳୀୟ ଜାତୀୟ ଚେତନାର ପ୍ରକୃଷ୍ଟ ପ୍ରତିନିଧି ବୋଲି ଗ୍ରହଣ କରାଯାଇଥିଲା । ବୀଣା, ତୁଳୀ, ବଇଁଶୀ ଓ ଲେଖନୀ ମାଧ୍ୟମରେ ଏହି ଆଦର୍ଶକୁ ରୂପାୟିତ କରିବାପାଇଁ ସୃଜନଶୀଳ କଳା ପ୍ରସ୍ତୁତ କରିବା ଲାଗି ସାଧନା ଚାଲିଥିଲା । କବି ଓ ଲେଖକମାନେ ଲେଖା ପ୍ରସ୍ତୁତ କରୁଥିଲେ । କଳାକାରମାନେ ଚିତ୍ର ଓ ସଙ୍ଗୀତ ସାଧନାରେ ମନୋନିବେଶ କରିଥିଲେ । ତରୁଣ ସାଧକମାନଙ୍କ କୃତି-ସମୂହର ସମୀକ୍ଷା ଲାଗି ସମ୍ମିଳିତ ବୈଠକରେ ବ୍ୟବସ୍ଥା ଥିଲା । ଗୁରୁଦେବଙ୍କ ଉପସ୍ଥାପିତ କଳିଙ୍ଗ ଭାରତୀ ଆଦର୍ଶକୁ ପ୍ରଚାର ଓ ପ୍ରସାରପାଇଁ ଭାଷଣକୁ ମାଧ୍ୟମ ରୂପେ ଗ୍ରହଣ କରାଯାଉଥିଲା । ତେଣୁ ସଭା-ସମିତିରେ କଳିଙ୍ଗଭାରତୀ ମଞ୍ଚରୁ କିପରି ବଳିଷ୍ଠ, ପ୍ରଭାବଶାଳୀ ଭାଷଣ ଦିଆଯାଇ ପାରିବ ସେଥିପାଇଁ ଦୈନନ୍ଦିନ ସାଧନାକୁ ଅବ୍ୟାହତ ରଖାଯାଇଥିଲା । ଭାଷଣକୁ କିପରି ସଫଳାତ୍ମକ ଉନ୍ନତତର କୋଟୀକୁ ନିଆଯାଇ ପାରିବ ସେଥିପାଇଁ ଭାଷଣରେ ପ୍ରୟୋଗ କରାଯାଉଥିବା ବିଧାନମାନଙ୍କର ଯତ୍ନର ସହିତ ସମୀକ୍ଷା କରାଯାଉଥିଲା । ଏସବୁ ହେଉଥିଲା ଗୁରୁଦେବଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଓ ଗୁରୁଦେବଙ୍କ ବାସ-ଭବନରେ । ଗୁରୁଦେବଙ୍କ ବାସଭବନକୁ ନାମିତ କରାଯାଇଥିଲା, 'କଳିଙ୍ଗ ଭାରତୀ ଭବନ' ।

କଳିଙ୍ଗ-ଭାରତୀ-ତରୁଣ-ସାଧକ ଗୋଷ୍ଠୀଙ୍କ ପରିସର କ୍ରମଶଃ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା ଓ ଓଡ଼ିଶାର ବିଭିନ୍ନାଞ୍ଚଳରେ "ଶ୍ରୁତି ସାହିତ୍ୟ ସମାଜ"ର ଶାଖାମାନ ପ୍ରତିଷ୍ଠା ହେଲା । 'ଶ୍ରୁତି ସାହିତ୍ୟ ସମାଜ' ଥିଲା ତରୁଣ ସାଧକମାନଙ୍କପାଇଁ ପ୍ରାରମ୍ଭିକ ତାଲିମ ଅନୁଷ୍ଠାନ । ଏହି ଅନୁଷ୍ଠାନରେ ନିଜର ନିଷ୍ଠା ଓ ସାମର୍ଥ୍ୟର ପ୍ରମାଣ ଦେଇ

ସାଧକମାନେ କଳିଙ୍ଗଭାରତୀ ଅନୁଷ୍ଠାନକୁ ଜୀବନ୍ତ ରଖିଥିଲେ । ବାର୍ଷିକ ଭଂଜ-ଜୟନ୍ତୀ ମାଧ୍ୟମରେ କଳିଙ୍ଗଭାରତୀ ଆଭିମୁଖ୍ୟର ପ୍ରଚୁର ପ୍ରଚାର କ୍ଷେତ୍ର ସୃଷ୍ଟି କରିଯାଉଥିଲା । ଭଂଜ-ଜୟନ୍ତୀ ମଣ୍ଡପରୁ ଜାତୀୟତାବାଦୀ ଭାଷଣର ବିସ୍ଫୋରଣ ଘଟୁଥିଲା ଅବିରାମ ଭାବରେ । ହଜାର ହଜାର ଶ୍ରୋତା ଦିନ ଦିନ ଧରି ଭଂଜ-ଜୟନ୍ତୀ ଉତ୍ସବ ଉପଭୋଗ କରୁଥିଲେ ଓ ଚିତ୍ତରେ ଉଦ୍‌ବୋଧିତ ହେଉଥିଲେ । ସାହିତ୍ୟ ଓ ସଂସ୍କୃତିପାଇଁ ଆୟୋଜିତ ସଭା ସମିତି ଯେ ଏପରି ଜୀବନ୍ତ, ବର୍ଣ୍ଣାଢ୍ୟ ଓ ଫଳପ୍ରସୂ ହୋଇପାରେ ଏହା ଭଂଜ-ଜୟନ୍ତୀ ଉତ୍ସବକୁ ନ ଦେଖିଲେ ବିଶ୍ୱାସ କରି ହେଉନଥିଲା । ଓଡ଼ିଶାର ବିଭିନ୍ନାଞ୍ଚଳକୁ ଏକ ସୂତ୍ରରେ ବାନ୍ଧି ପଦ୍ମ ଫୁଟିଲା ଭଳି ଭଂଜ-ଜୟନ୍ତୀ ଉତ୍ସବ ଓଡ଼ିଶାର ସର୍ବାଙ୍ଗକୁ ଚର୍ଚ୍ଚିତ କରିଦେଲା । ଏହାକୁ ଲକ୍ଷ୍ୟ କରି ବିଚ୍ଛନ୍ଦଚରଣଙ୍କ ପ୍ରୟାଣ ପରେ ଡକ୍ଟର ହରେକୃଷ୍ଣ ମହତାବ ଲେଖିଥିଲେ, "ବିଚ୍ଛନ୍ଦଚରଣଙ୍କୁ ମୁଁ ୧୯୪୦ ସାଲଠାରୁ ଜାଣିଥିଲି । ସେ ଜଣେ ବକ୍ତା ଓ ସାହିତ୍ୟିକ ବୋଲି ପରିଚିତ ଥିଲେ ; କିନ୍ତୁ କ୍ରମେ ସେ ସାହିତ୍ୟର ଯେଉଁ ଦିଗରେ ପାରଦର୍ଶିତା ଲାଭ କଲେ, ତାହା ସେ କରିପାରିବେ ବୋଲି ମୋର ଧାରଣା ନ ଥିଲା । ନାନା ଆଲୋଚନା ଓ ସମାଲୋଚନାର ଘାତ-ପ୍ରତିଘାତରେ ଉପେନ୍ଦ୍ରଭଞ୍ଜ ଯେ କେତେ ପଛରେ ପଡ଼ି ଯାଇଥିଲେ, ଆଜି ତାହା ସହଜରେ ଅନେକେ କଳ୍ପନା କରି ପାରିବେ ନାହିଁ । ଆଜି ଯେ ଉପେନ୍ଦ୍ରଭଞ୍ଜ ସାହିତ୍ୟିକ ସଂସାରର ଆଗକୁ ଆସି ପାରିଛନ୍ତି, ଏହା କେବଳ ବିଚ୍ଛନ୍ଦଚରଣଙ୍କ ସଂଗଠନ-ଶକ୍ତି ଯୋଗୁଁ । ସେ ଯେ ନିଜେ କେବଳ ଭଂଜ-ସାହିତ୍ୟ ପ୍ରେମ ତତ୍ପର ହେଲେ ତାହା ନୁହେଁ, ସେ ବହୁ ଯୁବକଙ୍କୁ ସେ ଦିଗରେ ଏପରି ଅନୁପ୍ରାଣିତ କରି ପାରିଲେ ଯେ ସେମାନେ ଭଂଜ-ସାହିତ୍ୟର ନିଷ୍ଠାପର ଭକ୍ତ ହୋଇ ସମାଲୋଚକମାନଙ୍କୁ ଅପଦସ୍ଥ କରିଦେଲେ । ଏଇଠି ବିଚ୍ଛନ୍ଦଚରଣଙ୍କର ଦୁଇଟି ଗୁଣ ସ୍ପଷ୍ଟ ଭାବରେ ବିକଶିତ ହୋଇଥିଲା । ଗୋଟିଏ ହେଉଛି ସାହିତ୍ୟ ଅଧ୍ୟୟନ ଓ ଅନ୍ୟଟି ହେଉଛି ସଂଗଠନ-ଶକ୍ତି । ଏ ଦୁଇଟି ଯାକ ପରସ୍ପରର ପରିପୂରକ ଭାବରେ ଏପରି କାର୍ଯ୍ୟ କଲେ ଯେ ବିଚ୍ଛନ୍ଦଚରଣ ଆଜି ସାହିତ୍ୟ କ୍ଷେତ୍ରରେ ଅମର ହୋଇ ରହିଲେ ।" (୧)

ଅଧ୍ୟୟନ ଓ ସାଂଗଠନିକ-ଶକ୍ତିର ବିକାଶ ଓ ସମନ୍ୱୟ ଘଟିଥିଲା ବିଚ୍ଛନ୍ଦ-ଚରଣଙ୍କ ବିଲକ୍ଷଣ ବ୍ୟକ୍ତିତ୍ୱରେ । ସେ ଓଡ଼ିଆ, ବଙ୍ଗଳା, ହିନ୍ଦୀ, ସଂସ୍କୃତ ତଥା ଇଂରାଜୀ ଭାଷାରେ ମୂଳ-ଗ୍ରନ୍ଥମାନ ଅଧ୍ୟୟନ କରିଥିଲେ । ଏହି ଭାଷାମାନଙ୍କରେ ତାଙ୍କର ଉତ୍ତମ ପ୍ରବେଶ ଥିଲା । କିନ୍ତୁ ସେ ପାରଦର୍ଶିତା ଲାଭ କରିଥିଲେ ଓଡ଼ିଆରେ ଓ ଇଂରାଜୀରେ । ନିଜର ମାତୃଭାଷା ଓଡ଼ିଆ ଓ ସେକାଳର ରାଜଭାଷା ଇଂରାଜୀରେ ସେ ଜଣେ ଅଧିକାରବିଦ୍ୟ ବ୍ୟକ୍ତି ଥିଲେ । ଇଂରାଜୀ ଭାଷା ଓ ସାହିତ୍ୟରେ ତାଙ୍କ ପ୍ରବେଶ ଅସାଧାରଣ ଥିଲା । ଆବାଲ୍ୟରୁ ଇଂରାଜୀ ସାହିତ୍ୟରେ ତାଙ୍କର ଦକ୍ଷତା

ଶିକ୍ଷକ ଓ ଅଧ୍ୟାପକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଉଚ୍ଚମାନର ଲେଖାମାନ ସେ ଇଂରାଜୀରେ ପ୍ରସ୍ତୁତ କରି ପ୍ରଶଂସା ଭାଜନ ହୋଇଥିଲେ । ପରବର୍ତ୍ତୀ ସମୟରେ ଓଡ଼ିଶାର ଉଚ୍ଚଶିକ୍ଷିତ ମହଲରେ ସେ ଇଂରାଜୀ ଭାଷା ଓ ସାହିତ୍ୟରେ ତାଙ୍କ କୃତିତ୍ୱ ପାଇଁ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇଥିଲେ । ଏହି ଇଂରାଜୀ ଜ୍ଞାନ ବଳରେ ହିଁ ତାଙ୍କୁ ସରକାରଙ୍କ ଲେଖକ-ଅନୁବାଦକ ଚାକିରୀରେ ନିଯୁକ୍ତିପତ୍ର ମିଳିଥିଲା । ସେ ଅତ୍ୟନ୍ତ ଦକ୍ଷତାର ସହିତ ଏହି କାର୍ଯ୍ୟ ଚଳାଇବା ସଙ୍ଗେ ସଙ୍ଗେ ସରକାରଙ୍କ ଦ୍ୱାରା ପ୍ରକାଶିତ ଓଡ଼ିଆ ପତ୍ରିକା 'ଉତ୍କଳପ୍ରସଙ୍ଗ' ଏବଂ ଇଂରାଜୀ ପତ୍ରିକା 'ଓଡ଼ିଶା ରିଭ୍ୟୁ'ର ସମ୍ପାଦନା କାର୍ଯ୍ୟ କରୁଥିଲେ । ଓଡ଼ିଆରୁ ଇଂରାଜୀରେ ଏବଂ ଇଂରାଜୀରୁ ଓଡ଼ିଆରେ ଅନୁବାଦ କାର୍ଯ୍ୟ ଯେଉଁ ସାବଲୀଳ ଢଙ୍ଗରେ ସେ ସମ୍ପାଦନ କରୁଥିଲେ ତାହା ବିସ୍ମୟକର ବୋଲି ତାଙ୍କ ନିନ୍ଦୁକମାନେ ମଧ୍ୟ ସ୍ୱୀକାର କରିଛନ୍ତି । ଓଡ଼ିଶାର ଅଦ୍ୱିତୀୟ ସାହିତ୍ୟ ପତ୍ରିକା 'ପ୍ରାଚୀ' ଇଂରାଜୀ ଭାଷାରେ ପ୍ରକାଶିତ ହୋଇ ଦେଶ ବିଦେଶରେ ଖ୍ୟାତି ଅର୍ଜନ କରିଥିଲା । 'ପ୍ରାଚୀ' ଥିଲା ଓଡ଼ିଆ ସଂସ୍କୃତି ଓ ସାହିତ୍ୟର ବାହକ । "ପ୍ରାଚୀ" ପତ୍ରିକାର ସୁଦକ୍ଷ ସମ୍ପାଦକ, ଲେଖକ, ଅନୁବାଦକ ଥିଲେ ବିଚ୍ଛନ୍ଦଚରଣ । ଏହା ଛଡ଼ା ଅନ୍ୟାନ୍ୟ ଇଂରାଜୀ ପତ୍ରିକାର ସମ୍ପାଦକ ରୂପେ ସେ ଖ୍ୟାତି ଅର୍ଜନ କରିଥିଲେ ।

ଓଡ଼ିଆରୁ ଇଂରାଜୀ ଏବଂ ଇଂରାଜୀରୁ ଓଡ଼ିଆ ଅନୁବାଦ ସହିତ ସେ ହିନ୍ଦୀରୁ ଓଡ଼ିଆ ଅନୁବାଦ ମଧ୍ୟ କରିଛନ୍ତି । ସଂସ୍କୃତରୁ ଓଡ଼ିଆ ଅନୁବାଦ କରିବାରେ ସେ ଦକ୍ଷତାର ପରିଚୟ ଦେଇଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟରେ ଅନୁବାଦକ ଭାବରେ ବିଚ୍ଛନ୍ଦଚରଣଙ୍କ ଅମଳିନ କୀର୍ତ୍ତି ବିରାଜିତ ହୋଇ ରହିଅଛି ।

ଅନୁବାଦକ, ବ୍ୟାଖ୍ୟାକାର, ସମାଲୋଚକ ତଥା ପତ୍ରିକା ସଂପାଦକ ଭାବରେ ତାଙ୍କର ମହତ୍ତ୍ୱ ସୁପ୍ରତିଷ୍ଠିତ ହୋଇଥିଲେ ହେଁ ମୁଖ୍ୟତଃ ସେ ଥିଲେ ଜଣେ କବି—ସୃଜନଧର୍ମୀ କଳାକାର । ତାଙ୍କ କବିତାର ଛନ୍ଦେ ଛନ୍ଦେ ପ୍ରାଣର ଦରଦ ପ୍ରକଟିତ ହୋଇଛି । ବିରହ, ମିଳନ, ଅନୁସନ୍ଧିତ୍ସାର ମାର୍ମିକ ଝଙ୍କାର ତାଙ୍କ କବିତାକୁ ପ୍ରାଣବନ୍ତ କରି ତୋଳିଛି । ଦେଶାତ୍ମବୋଧରେ ଅନୁପ୍ରାଣିତ ହୋଇ ସେ ଯେଉଁ କବିତାମାନ ରଚନା କରିଛନ୍ତି, ତାହା କେବଳ ଜଣେ ଭାବପ୍ରବଣ କବିର ବାଣୀ-ଉଚ୍ଛ୍ୱାସ ବୋଲି କହିବା ଭୁଲ ହେବ । ସେ ଜଣେ ବାସ୍ତବବାଦୀ ଦୃଷ୍ଟିସମ୍ପନ୍ନ ଜାତୀୟ ଚରିତ୍ର ନିର୍ମାତା ଥିଲେ । ତାଙ୍କ ଦେଶାତ୍ମବୋଧ କବିତାରେ ଦୂରଦୃଷ୍ଟି ସହିତ ଅନ୍ତର୍ଦୃଷ୍ଟିର ମିଳିତ ରୂପ ପାଠକକୁ ଭବିଷ୍ୟତ କର୍ମ ପାଇଁ ଅନୁପ୍ରେରିତ କରେ । ତାଙ୍କ ଦେଶାତ୍ମବୋଧ କବିତା ଅଧ୍ୟୟନ କଲେ ବୋଧହୁଏ ଯେ, ସେ ଏ ଦେଶ ଓ ଜାତିର ଅତୀତ ଦ୍ୱାରା ଉଦ୍‌ବୋଧିତ ହୋଇଥିଲେ, ବର୍ତ୍ତମାନର ଦୁରବସ୍ଥା ଦେଖି କ୍ଷୁବ୍ଧ

ହୋଇଥିଲେ ଓ ଭବିଷ୍ୟତରେ କିପରି ମହିମାମୟ ଅତୀତର ପୁନର୍ଜନ୍ମ, ନବଜନ୍ମ ହେବ ସେଥିପାଇଁ ସେ ପନ୍ଥା ନିର୍ଦ୍ଦେଶ କରୁଥିଲେ । ସେଥିପାଇଁ ସେ ପ୍ରଶ୍ନ କରିଛନ୍ତି "ଅତୀତ ଉଠିବ କେବେ ଚିରି ମାଟିକି" ? ଭବିଷ୍ୟତରେ ଅତୀତର ନବଜନ୍ମ କେବେ ଓ କିପରି ସମ୍ଭବ ହେବ ସେଥିପାଇଁ ସେ ଉତ୍କଣ୍ଠିତ ହୋଇ ରହିଥିଲେ ଓ ପ୍ରାଣର ବ୍ୟାକୁଳତା ପ୍ରକାଶ କରୁଥିଲେ । ଅତୀତର ସ୍ମୃତିମାନ ଆମକୁ ସମ୍ମୋହିତ କରି ରଖୁ କିମ୍ବା ବର୍ତ୍ତମାନର ଅଧୋଗତି ଆମକୁ ଅଧୋମୁଖ କରି ରଖୁ, ଏହା ତାଙ୍କର ଉଦ୍ଦେଶ୍ୟ ନଥିଲା । ଅତୀତର ପୁନର୍ଜାଗରଣ ଓ ବଳିଷ୍ଠ ଭବିଷ୍ୟତର ନବ ଜନ୍ମଲାଗି ସେ ଆହ୍ୱାନ କରୁଥିଲେ କହିଲେ ତାହା ଅତ୍ୟୁକ୍ତି ହୋଇଯିବ । ବରଂ ସେଥିଲାଗି ସେ ଅହରହ ହୁଁକାର ଛାଡୁଥିଲେ ।

ସ୍ୱଚ୍ଛନ୍ଦଚରଣ କହୁଥିଲେ "ଉତ୍କଳର ସାଂସ୍କୃତିକ ଜୀବନର ପୁନର୍ଜାଗରଣ ପ୍ରୟୋଜନ" । ଉତ୍କଳୀୟ ଜୀବନର ସବୁ କ୍ଷେତ୍ରରେ ପୁନର୍ଜାଗରଣ ଆଣିବାପାଇଁ ସେ ଆବାହନୀ ମନ୍ତ୍ର ପଢ଼ୁଥିଲେ ; ନବ ପ୍ରେରଣା ନବ ଉନ୍ମାଦନାରେ ସେ ଜାତୀୟ ଧମନୀର ରକ୍ତ ସ୍ରୋତକୁ ଉଜ୍ଜୀବିତ କରୁଥିଲେ । ସେ ଯେଉଁ ଅତୀତ-ଉଦ୍‌ବୋଧନ କରୁଥିଲେ ତାହା ଏହି ପୁନର୍ଜାଗରଣ-କର୍ମର ଉଦ୍ଦୀପକ ସ୍ୱଭାବ ମାତ୍ର । ତାହା ତାଙ୍କ ପାଇଁ ସଂପୂର୍ଣ୍ଣ କର୍ମ କେବେ ନଥିଲା ।

ଯେଉଁମାନେ ଅତୀତକୁ ପାଶୋରି ବସିଥିଲେ, ଅତୀତକୁ ପଛ କରି ଠିଆ ହୋଇ କଥା କହୁଥିଲେ ଅଥବା ଯେଉଁମାନେ ତାଙ୍କର ଏକ ବିଶାଳ ପରମ୍ପରା ଥିଲା ବୋଲି ଜାଣି ମଧ୍ୟ ନଥିଲେ, ସେମାନଙ୍କ ମଧ୍ୟରେ ହୀନମନ୍ୟତା ଓ ଅନୁକରଣପ୍ରିୟତାର ବିଷ ସଂକ୍ରମିତ ହୋଇ ଯାଇଥିଲା । ସାଂସ୍କୃତିକ କ୍ଷେତ୍ରରେ "ଥରେ କାଶିଦେଇ ସାହେବ ଠାଣିରେ, ପୋଛଇ ବଦନ ରୁମାଲ କାନିରେ" ଏହିଭଳି ସାଂସ୍କୃତିକ ଶୁଭଗମନ୍ୟତା ଅନେକ ତଥାକଥିତ ଆଧୁନିକଙ୍କୁ ଗ୍ରାସ କରି ବସିଥିଲା । "ଆମର କିଛି ନାହିଁ, କିନ୍ତୁ ଅନ୍ୟମାନଙ୍କର ସବୁ ଅଛି" ଏହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ଅନ୍ଧ ଅନୁକରଣପ୍ରିୟତା ପ୍ରକାଶ କରୁଥିଲେ । ଯାହା ଯେଉଁଠି ସେମାନେ ଦେଖିଲେ, ସେଥିରେ ତାଙ୍କ ଚକ୍ଷୁ ଝଲସି ଗଲା । ନିଜ ଘର ପ୍ରତି ତ ତାଙ୍କର ଦୃଷ୍ଟି ନଥିଲା; ତେଣୁ କଅଣ ଥିଲା, କଅଣ ନଥିଲା, କଅଣ ଆଣିଲେ ବା କେଉଁଠି କିପରି ଥୁଆ ହେବ, ଖଞ୍ଜି ରଞ୍ଜି ହୋଇ ସୁନ୍ଦର ଓ ସାର୍ଥକ ଦିଶିବ, ସେ କଥା ସେମାନେ ଚିନ୍ତା କରିବାର ସୁଯୋଗ ପାଇଲେ ନାହିଁ । ଆହରଣ କରିବା ଭଲ କଥା । କିନ୍ତୁ ଯାହା ଆହରଣ କରାଯିବ ତାକୁ ଜୀର୍ଣ୍ଣ କରି ନିଜ ରକ୍ତସ୍ରୋତରେ ମିଳାଇ ନପାରିଲେ ବିଷ ସୃଷ୍ଟି ହେବ ସିନା, ଆଉ କେଉଁ ଫଳ ବା ହେବ । ଆହରିତ ଭାବକୁ ପରିପାକ କରିବାକୁ ହେବ, ଜୀର୍ଣ୍ଣ କରିବାକୁ ହେବ, ତେବେ ଯାଇ ତାହା ଜାତୀୟ ଜୀବନ ତନ୍ତ୍ରରେ

ସମ୍ପୃକ୍ତ ହେବ । ବିଚ୍ଛନ୍ଦଚରଣ ଅନ୍ୟାନ୍ୟ ଦେଶରୁ, ଅନ୍ୟାନ୍ୟ ସୂତ୍ରରୁ ଖିବ ଆହରଣ କରିବାର ବିରୋଧ ନଥିଲେ, ସେ ବିରୋଧ କରୁଥିଲେ ଅନ୍ଧ ଅନୁକରଣକୁ (ଯାହାକୁ ସେ ହନୁକରଣ ବୋଲି କହୁଥିଲେ) ।

ସେ ଆମକୁ ଆମର ଅତୀତ ଗୌରବ ପ୍ରତି ସଚେତନ କରାଇବା ବ୍ରତ ଗ୍ରହଣ କରିଥିଲେ । ଆମେ ଆମ ଚକ୍ଷୁରେ ଆଉଥରେ କୋଣାର୍କ କଳାକୁ ଦେଖିବୁ, ଓଡ଼ିଶୀ ନୃତ୍ୟକୁ ଦେଖିବୁ, ଓଡ଼ିଆ ସାହିତ୍ୟକୁ ଦେଖିବୁ—ଏ ଭାବନା ତାଙ୍କୁ ଅଥୟ କରୁଥିଲା । ଆମ ସମ୍ପୃକ୍ତ ପରମ୍ପରାକୁ ପାଶୋର ଦେଇ ଅଥବା ଉପେକ୍ଷା କରି ପଦେ କଥା କହିଲେ ସେ ଅଗ୍ନିଶର୍ମା ହୋଇ ଉଠୁଥିଲେ । ଆଗ୍ନେୟଗିରି ପରି ଗର୍ଜି ଉଠୁଥିଲେ । ପରମ୍ପରା ପ୍ରତି ଆଘାତ କଲେ ତାଙ୍କ ହାତରୁ ତ୍ରାଣ ନଥିଲା । ଜାତୀୟ ପରମ୍ପରାର ଜାଗ୍ରତ ପ୍ରହରୀ ବିଚ୍ଛନ୍ଦଚରଣ ଏଥିପାଇଁ ଯେ କେତେ ଅପ୍ରିୟତା ଅର୍ଜନ କରିଛନ୍ତି, କ୍ଲେଶ ଭୋଗିଛନ୍ତି, ତାହା କିଏ କହିବ । ଯେତେ ବଡ ଡେଉ ଆସୁ, ଯେତେ ବଡ଼ ବିପଦ ମାଡ଼ିପଡ଼ୁ, ସେ କେବେ ଶିର ଅବନତ କରି ଶିଖି ନଥିଲେ । ଏହି ଢଙ୍ଗ ତାଙ୍କୁ "ଉଗ୍ରପନ୍ଥୀ" ଆଖ୍ୟାରେ ନାମିତ କଲା । କିନ୍ତୁ ସେ ବୁଝିଥିଲେ ଅସତ୍ୟ ଓ ଅନ୍ୟାୟ ସଙ୍ଗେ ସାଲିସହୀନ ସଂଗ୍ରାମ ଚଳାଇବା ଯଦି ଉଗ୍ରପନ୍ଥୀ ହୁଏ, ଏହି ପନ୍ଥା ସର୍ବାଦୌ ବରଣୀୟ ବୋଲି ସେ ମନ୍ତବ୍ୟ ପ୍ରକାଶ କରୁଥିଲେ । ବ୍ୟକ୍ତିଗତ ଜୀବନରେ ଜଣେ ମିଷ୍ଟଭାଷୀ, ମଧୁର ଆଳାପୀ ବ୍ୟକ୍ତି ଯେ ସର୍ବସମ୍ମିତରେ 'ଉଗ୍ରପନ୍ଥୀ' ଆଚରଣ କରୁଥିଲେ, ଏହାର କାରଣ ସହୃଦୟତା ସହିତ ବିଚାର କଲେ, ବିଚ୍ଛନ୍ଦ-ଚରଣଙ୍କ ପ୍ରତି ଆମ ସମ୍ମାନବୋଧ ବହୁଗୁଣିତ ହୋଇଯାଏ । ଓଡ଼ିଶା, ଓଡ଼ିଶାର ଐତିହ୍ୟ, ସଂସ୍କୃତି, ସାହିତ୍ୟ ଓ ସଙ୍ଗୀତର ପରିପନ୍ଥୀମାନଙ୍କ ପାଇଁ ବିଚ୍ଛନ୍ଦଚରଣ ଉଗ୍ର ରୂପ ଧାରଣ କରୁଥିଲେ । ଏହି ପ୍ରସଙ୍ଗରେ କବିବର ରାଧାନାଥଙ୍କ ଚିଲିକା କାବ୍ୟରୁ ପଦେ ମନେ ପଡ଼େ—

"ଉଗ୍ରରୂପ ତୋର ରଖିଥିବୁ ଯୋଡ଼ାଇ,
ଦୁରନ୍ତ ଉତ୍କଳୀ ପରିପନ୍ଥୀ ପାଇଁ ।"

ଦସ୍ୟୁମାୟ ବର୍ତ୍ତମାନର, ଜୀର୍ଣ୍ଣଶୀର୍ଣ୍ଣ ବର୍ତ୍ତମାନର ରୂପ ତାଙ୍କୁ ଖୁବ୍ ଆଘାତ ଦେଇଥିଲା । ସେ ମର୍ମେ ମର୍ମେ ଅନୁଭବ କରୁଥିଲେ ଯେ ଖାରବେଳ-ସୁହାଗିନୀ ମାଆର ଏ ଦୁର୍ଦ୍ଦଶା ଅସହ୍ୟ । ମନ୍ଦିରମାଳିନୀ, ପୋତପୂତବେଳାଶାଳିନୀ ଉତ୍କଳ-ଜନନୀଙ୍କ ଦୁର୍ଦ୍ଦଶାରେ ସେ ମୁହ୍ୟମାନ ହୋଇ ପଡ଼ୁଥିଲେ । ବାରବାଟୀ ଓ କୋଣାର୍କର ଦୁର୍ଦ୍ଦଶା ଦର୍ଶନ କରି ତାଙ୍କ ହୃଦୟ ବିଦୀର୍ଣ୍ଣ ହୋଇ ଯାଉଥିଲା । ସେ ପାନ୍ଥମାନଙ୍କୁ ସମ୍ବୋଧନ କରି କହୁଥିଲେ—

"ବାରବାଟୀ ଲୋତକରେ ଲୋତକ ମିଳାଇ
କାନ୍ଦ ନାହିଁ ସନ୍ଧ ବାରେ କାନ୍ଦ ଆଜ ସଖି" (୨)

ଏଠାରେ ବାରବାଟୀ ଓ କୋଣାର୍କକୁ ପ୍ରତୀକ ଭାବରେ ବୁଝିବାକୁ ହେବ । ଦୁଇଟିଯାକ ଆମର ଗୌରବାବହ ଅତୀତର ମହିମାମୟ ବସ୍ତୁ । ସେ ଦୁହିଁଙ୍କ ବର୍ତ୍ତମାନର ଦୂରବସ୍ଥା ପ୍ରତୀକାତ୍ମକ ଭାବରେ ଆମ ସମଗ୍ର ଅତୀତର ଦୁରବସ୍ଥା ବୋଲି ବୁଝିବାକୁ ହେବ । ଏ ପରିସ୍ଥିତିରେ ଆମେ କ'ଣ କରି ପାରିବୁ ? ବଛନ୍ଦଚରଣଙ୍କ ଉତ୍ତର ହେଉଛି, କିଛି ନକରି ପାରିଲେ ହେଁ ଅଶ୍ରୁ ତର୍ପଣ କରି ପାରିବ ତ । ଏ ଅଶ୍ରୁ ସମ୍ବେଦନର ଅଶ୍ରୁ । ନିଜ ଦେଶ ଓ ଜାତିର ସମଗ୍ର ଅତୀତ ବିଭୂତି ଲାଗି ଏ ସମ୍ବେଦନ ଜାତ ହେବା ମାତ୍ରକେ ପୁନର୍ଜାଗରଣର ଆହ୍ୱାନ-ସଙ୍ଗୀତ ଜାତୀୟ ହୃଦୟ-ତନ୍ତ୍ରୀରେ ଅନୁରଣିତ ହୋଇ ଉଠିବ ।

ଜାତିର ଭବିଷ୍ୟତ ପ୍ରତି ଲକ୍ଷ୍ୟ ରଖି ସେ ଗାଇଛନ୍ତି —

"ଯିବ ଜାତିର ଏ ଅପମାନ
ଚହ୍ନିବ ଉତ୍କଳୀ ଘରଧନ
ବିଶ୍ୱସାରସ୍ୱତ — ସଙ୍ଗୀତ ବିଭବୁଁ
କରିବ ସେ ସାର ଆହରଣ" । (୩)

ବଛନ୍ଦଚରଣ ବୁଝିଥିଲେ, ଉତ୍କଳୀୟମାନେ ପ୍ରଥମେ ନିଜ ଘରଧନକୁ ଚହ୍ନିବେ ଓ ଘରଧନ ଚହ୍ନିସାରିଲା ପରେ ବିଶ୍ୱସାରସ୍ୱତ ବିଭବରୁ ବାଛି ବାଛି ସାର ଆହରଣ କରିବେ । ଉତ୍କଳର ଅଭ୍ୟୁତ୍‌ଥାନପାଇଁ କବି ଭଗବତୀଙ୍କୁ ପ୍ରାର୍ଥନା କରି କହିଛନ୍ତି— "ମା ! ମୃତକୁ ବାତୁଳ କରିବା ପାଇଁ ମୃତ୍ୟୁମାନଙ୍କୁ ସଂଜୀବିତ କରିବାପାଇଁ ତୋ ବୀଣା ତାରର କ୍ଷମତା ଅପ୍ରତିମ । ଯେଉଁଦିନ ତୋର ସେ ସଂଜୀବନୀ ସଙ୍ଗୀତ ଓଡ଼ିଆଙ୍କ କର୍ଣ୍ଣ-କୁହରରେ ପ୍ରବେଶ କରିବ ସେଦିନ ସେହି ଚିର ଈପ୍‌ସିତ ପୁନର୍ଜାଗରଣ ସମ୍ଭବ ହେବ । କବି ଉତ୍କଳପାଇଁ ଶୁଭକାମନା କରିଛନ୍ତି—

"ନବୀନ ଯୁଗରେ — ବିଶ୍ୱ ଦରବାରେ
ଗରବେ ଟେକୁ ସେ ଶିର
ନବୀନ ତରଙ୍ଗେ — ତୋଳି ନାନା ରଙ୍ଗେ
ନାଚୁ ଚନ୍ଦ୍ରୋତ୍ପଳା ନୀର ।" (୪)

ଓଡ଼ିଶା ସଭାରେ ଏହି ନବଯୁଗର ଆବିର୍ଭାବ ଲାଗି କବି ଆଶ୍ୱାସନା ବଚନ ଶୁଣାଇଛନ୍ତି, "ତପସ୍ୟା ଅଛି ଆମ ବହୁଯୁଗରୁ" । ସେହି ତପସ୍ୟା ବଳରେ

ପୁନର୍ଜାଗରଣ ସମ୍ଭବ ହେବ । ମା ଭାରତୀଙ୍କୁ ସମ୍ବୋଧନ କରି କବି କୃତାଞ୍ଜଳି ପୂଟରେ ଜଣାଇଛନ୍ତି—

ମା ଭାରତ !
ନବଯୁଗ ଶଙ୍ଖ ବାଜୁ
ନବ ସାରସ୍ୱତ ଗଉରବ ଟୀକା କଳିଙ୍ଗ ଲଲାଟେ ରାଜୁ (୬)

କବି ବିଚ୍ଛନ୍ଦଚରଣ ଓଡ଼ିଶାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଏକ ସୂତ୍ରରେ ବାନ୍ଧିଛନ୍ତି । ତାଙ୍କୁ ଜଣେ "ପ୍ରାଚୀନ ପନ୍ଥୀ" ବୋଲି ଯେଉଁମାନେ ଆକ୍ଷେପ କରନ୍ତି, ସେମାନେ ବିଚ୍ଛନ୍ଦଚରଣଙ୍କୁ ସାରସ୍ୱତ ନ୍ୟାୟ ପାଇବାରୁ ବଞ୍ଚିତ କରିଥାନ୍ତି । ସେ ନବୀନତାର ବିରୋଧୀ ନୁହନ୍ତି । ସେ ନବଯୁଗର ନବୀନତମ ସମ୍ଭାବନାକୁ ଅସ୍ୱୀକାର କରିନ୍ତି ନାହିଁ । ବରଂ ନବଯୁଗର ଆବିର୍ଭାବ ଲାଗି ତାଙ୍କ ପ୍ରାଣରୁ ଅସରନ୍ତି ପ୍ରାର୍ଥନା ବାଣୀ-ଚରଣରେ ଅଜାଡ଼ି ହୋଇ ପଡ଼ିଛି । ଏଠାରେ ସ୍ମରଣ ରଖିବାକୁ ହେବ ଯେ, ସେ ଯେଉଁ ନବଯୁଗର ଉଦୟ ଲାଗି ବ୍ୟାକୁଳତା ପ୍ରକାଶ କରିଛନ୍ତି, ତାହା ଏ ଦେଶର ଅତୀତରୁ ବିଚ୍ଛିନ୍ନ ନବଯୁଗ ନୁହେଁ । ତାଙ୍କ ବାଂଛିତ ନବଯୁଗ, ଅତୀତ ସାହିତ୍ୟ ଆତ୍ମିକ ସମ୍ବନ୍ଧରେ ସଂଲଗ୍ନ ଓ ସମ୍ପର୍କିତ । ଅନ୍ୟ ଭାଷାରେ କହିଲେ, ଭବିଷ୍ୟତ ଗର୍ଭରୁ ଅତୀତର ନବକଳେବରର ସମ୍ଭାବନାକୁ ସେ ସ୍ୱାଗତ କରିଛନ୍ତି । ଓଡ଼ିଶାରେ ସାଂସ୍କୃତିକ ସାହିତ୍ୟ ବା କୃଷ୍ଟିଗତ ଅଖଣ୍ଡତା ରକ୍ଷା କରିବା ଲାଗି ସେ ଦୃଢ଼ସଙ୍କଳ୍ପ ଥିଲେ । ତା ନ ହେଲେ, ଓଡ଼ିଆ ପୁଅମାନେ ନିଜ ଭୂମିରେ ନିଜକୁ ବୈଦେଶିକ ବୋଲି ମଣିଥାନ୍ତେ । ଏହାଠାରୁ ବଳି ସାଂସ୍କୃତିକ ଅବକ୍ଷୟର ଆଉ କି ଦୁର୍ଲକ୍ଷଣ କଳ୍ପନା କରାଯାଇ ପାରିଥାନ୍ତା । ଏହାକୁ ବିଚ୍ଛନ୍ଦଚରଣ ଜାତୀୟ ଜୀବନର ଚରମ ଦୁର୍ଭାଗ୍ୟ ବୋଲି ମନେ କରୁଥିଲେ । ଏହି ଦୁର୍ଭାଗ୍ୟକୁ ଏଡ଼ାଇବା ପାଇଁ ପ୍ରାଣପାତ କରିବାକୁ ସେ ପ୍ରସ୍ତୁତ ଥିଲେ । ଦେଶର ତରୁଣ ଗୋଷ୍ଠୀକୁ ସେଥିପାଇଁ ମଧ୍ୟ ପ୍ରସ୍ତୁତ କରାଉଥିଲେ ।

ଅନାଗତ ନବଯୁଗ ଲାଗି ଅନେକ ସ୍ୱପ୍ନ ଦେଖିଛନ୍ତି ବିଚ୍ଛନ୍ଦଚରଣ । ତାଙ୍କ ଜୀବନ ଓ ସାହିତ୍ୟରେ ନବଯୁଗ ପାଇଁ ସେ ପାଗଳ ହୋଇ ରହିଛନ୍ତି । ବିଚ୍ଛନ୍ଦଚରଣଙ୍କ ନୟନେ ନୟନେ ସ୍ୱପ୍ନ ମାଦକତା ଭରି ରହିଥିଲା । ସେ ନବଯୁଗର ସ୍ୱପ୍ନ ଦେଖୁଥିଲେ; କୋଣାର୍କ ନବନିର୍ମିତ ହେବ ବୋଲି ସ୍ୱପ୍ନ ଦେଖିଥିଲେ । ଓଡ଼ିଆ ବଣିକମାନଙ୍କ ସୌଧ ଚୂଳରେ ସ୍ୱର୍ଣ୍ଣ କଳସ ବସିବା ସ୍ୱପ୍ନ ତାଙ୍କୁ ମୁଗ୍ଧ କରୁଥିଲା । ବିଶ୍ୱ ଦରବାରରେ ପ୍ରତିଭାଶାଳୀ ଓଡ଼ିଆମାନେ ସମ୍ମାନିତ ହେବାର ଗୌରବର ସ୍ୱପ୍ନ ଦେଖି

ତାଙ୍କ ସ୍ୱପ୍ନ କ୍ୱଚିତ୍ ମୋହ ହୋଇଯାଉଥିଲା । ତାଙ୍କର ଏ ସବୁ ସ୍ୱପ୍ନ କଳ୍ପନାବିଳାସୀ ସ୍ୱପ୍ନ ନଥିଲା । ଏ ସବୁ ଥିଲା ତାଙ୍କ ଜାତୀୟତାବାଦୀ ମନର କର୍ମାଭିମୁଖୀ ପ୍ରାକ୍-ପ୍ରସ୍ତୁତି । ବାରବାଟୀ ଜେଲକରେ ଜେଲକ ମିଳାଇ ଜାତିପାଇଁ ସେ ଏସବୁ ସ୍ୱପ୍ନ ଦେଖୁଥିଲେ । ସେ ନିଜକୁ ଜଣେ "ଅପ୍ରତିହତ ସ୍ୱପ୍ନଦର୍ଶୀ" ବୋଲି କହନ୍ତି । ତାଙ୍କର ସମସ୍ତ ସ୍ୱପ୍ନ ଉଦ୍ଦିଷ୍ଟ ଥିଲା ଜାତିପାଇଁ, ଜାତୀୟ ଜୀବନରେ ନବଯୁଗର ଆନୟନ ପାଇଁ ।

ନିଜର କବି-ଜୀବନକୁ ସେ ସାର୍ଥକ ଜୀବନ ବୋଲି ମଣୁଥିଲେ । ବାଣୀସେବାକୁ ଜୀବନର ବ୍ରତ କରି ବଞ୍ଚିବା ପାଇଁ ସେ ସଂକଳ୍ପ କରିଥିଲେ ଓ ତରୁଣ ଗୋଷ୍ଠୀର ସାଧକମାନଙ୍କୁ ସେ ବ୍ରତରେ ଦୀକ୍ଷିତ କରାଉଥିଲେ । ସେ ଅନେକ ଭାଷଣ ପ୍ରସଙ୍ଗରେ କହୁଥିଲେ, "ଲେଖା ପ୍ରସ୍ତୁତ କରିବା ଅପେକ୍ଷା ଲେଖକ ପ୍ରସ୍ତୁତ କରାଇବାକୁ ମୁଁ ଅଧିକତର ଗୁରୁତ୍ୱ ଆରୋପ କରୁଛି ।"

ସ୍ୱଚ୍ଛନ୍ଦଚରଣ ଥିଲେ ସ୍ୱଭାବତଃ ଜଣେ କବି ଓ କବିତା ପ୍ରତି ତାଙ୍କର ଥିଲା ଅନନ୍ୟ ଅନୁରକ୍ତି । ନିଜ ଜୀବନକୁ ଏକ ପଙ୍କିଳ ସରୋବର ଓ କବିତାର ଉନ୍ମେଷକୁ ତହିଁରେ ରଙ୍ଗକଇଁ ଫୁଲର ପ୍ରକାଶ ବୋଲି ସେ ବର୍ଣ୍ଣନା କରିଅଛନ୍ତି । କବି ସ୍ୱଚ୍ଛନ୍ଦ ଚରଣଙ୍କ କବିତାର ଉପଜୀବ୍ୟ ବିଷୟ ଥିଲା, ପ୍ରେମ, ଦେଶପ୍ରୀତି ଓ ଭଗବତ୍ ଭକ୍ତି ।

ନିସର୍ଗ ସାରସ୍ୱତ ସମ୍ପଦର ଅଧିକାରୀ ହୋଇ ଧନହୀନ କବିମାନେ ପାର୍ଥିବ ରାଜସମ୍ପଦକୁ ତୁଚ୍ଛା ଗଣନା କରନ୍ତି ନାହିଁ । ତେଣୁ କବିମାନଙ୍କୁ "ଗର୍ବେଶ୍ୱର" ଆଖ୍ୟା ଦେଇଛନ୍ତି ସ୍ୱଚ୍ଛନ୍ଦଚରଣ । ସୌନ୍ଦର୍ଯ୍ୟ ପିପାସୁ "ଶୋଭାଜୀବୀ" କବିମାନେ ଶୋଭା ସରଣୀରେ ଗତି କରନ୍ତି ଏବଂ ତାହାର ପରିଣତି ସ୍ୱରୂପ ତାଙ୍କୁ ଭୂମାନନ୍ଦ ପ୍ରାପ୍ତି ଘଟିଥାଏ । ଭୂମାନନ୍ଦ ପ୍ରାପ୍ତି ହିଁ ସାହିତ୍ୟ ଓ କଳା ସାଧନାର ଅନୁପମ ପୁରସ୍କାର । ଭୂମାନନ୍ଦକୁ ଆକଣ୍ଠ ପାନ କରିବା ପାଇଁ ସ୍ୱଚ୍ଛନ୍ଦଚରଣଙ୍କ ଚିତ୍ତ-ଚାତକ ଚପଳଛନ୍ଦରେ ଯେଉଁ ଯେଉଁ ରେଖା କାଟି ଉଡ଼ି ବୁଲିଛି ତାହାର ସମଷ୍ଟି ହିଁ ତାଙ୍କ ଭାବୋଦ୍‌ବେଳିତ ଜୀବନର ଅମଳିନ ଆଲେଖ୍ୟ ।



୧

# ବାଲ୍ୟଜୀବନ

ବିଂଶ ଶତାବ୍ଦୀର ପ୍ରାକ୍‌କାଳର କଥା । ସେତେବେଳକୁ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଲାଗି ସାଜ ସାଜ ଧ୍ୱନି ଭାରତୀୟ ଜାତୀୟ ଜୀବନକୁ ଆଲୋଡ଼ିତ କରୁଥାଏ । ଦେଶ ମାତୃକାର ପୂଜାବେଦୀରେ ରକ୍ତଦାନ ଓ ପ୍ରାଣଦାନ କରିବା ପାଇଁ ଯୁବସମାଜ ତତ୍ପର ହୋଇ ରହିଥାନ୍ତି । ବିଦେଶୀ ବର୍ଜନ ଓ ସ୍ୱଦେଶୀ ଅର୍ଜନ ଲାଗି ପ୍ରବଳ ଉତ୍କଣ୍ଠା ପ୍ରକାଶ ପାଉଥାଏ । ମୁକ୍ତି ଓ ସ୍ୱାଧୀନତାର ଆହ୍ୱାନରେ ସରଗରମ ହୋଇ ରହିଥାଏ ଭାରତର ବାୟୁମଣ୍ଡଳ । କେବଳ ବୈଦେଶିକ ଶାସନ ବିରୁଦ୍ଧରେ ନୁହେଁ, ସକଳ ପ୍ରକାର ଉତ୍ପୀଡ଼କ ବିଦେଶୀ ଭାବଧାରା ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହେଉଥାଏ । ଜାତିର ମୌଳିକ ସ୍ୱର, ମୌଳିକ ରୂପକୁ ଉଦ୍‌ଘାଟିତ କରିବା ପାଇଁ ଜାତୀୟତା ମନ୍ଦିରର ମହାନ୍ ଶିଳ୍ପୀମାନେ ନିରବଚ୍ଛିନ୍ନ ଉଦ୍ୟମ ଚଳାଇଥାନ୍ତି । ସର୍ବତ୍ର ଏକ ସଂଗ୍ରାମୀ ନବଜୀବନର ଅଭ୍ୟୁଦୟ ଘଟୁଥାଏ । ଓଡ଼ିଶା ସମ୍ପୂର୍ଣ୍ଣ ଭାବରେ ସାମିଲ ହୋଇଥାଏ ଏହି ମହାଭାରତୀୟ ଆନ୍ଦୋଳନରେ । ଓଡ଼ିଶାର ପୁରପଲ୍ଲୀରେ ଲହରେଇ ବହୁଥାଏ ସ୍ୱଦେଶପ୍ରୀତି ଓ ଜାତ୍ୟାଭିମାନର ତୋଫାନିଆ ପବନ । ଏହି ପରିବେଶରେ ବିଚ୍ଛନ୍ଦଚରଣଙ୍କ ବାଲ୍ୟଜୀବନ ଆରମ୍ଭ ହେଲା ।

୧୯୦୧ ମସିହା ଜାନୁୟାରୀ ମାସ କୋଡ଼ିଏ ତାରିଖ । ଖୋର୍ଦ୍ଧା ଅନ୍ତଃପାତୀ ଜାଆଁଳା ଗ୍ରାମରେ ଜନ୍ମଗ୍ରହଣ କଲେ ବିଚ୍ଛନ୍ଦଚରଣ । ଭୁବନେଶ୍ୱରରୁ ଖୋର୍ଦ୍ଧା ମଧ୍ୟରେ ଜାତୀୟ ରାଜପଥର ଦକ୍ଷିଣ ପାର୍ଶ୍ୱରେ ପଲ୍ଲୀଶ୍ରୀମଣ୍ଡିତା ଜାଆଁଳା ଗ୍ରାମଟି ଦିଗନ୍ତ ପ୍ରସାରୀ ମୁକ୍ତାକାଶ ତଳେ ବିଧାତାଙ୍କ ଅଂଜୁଳାଏ ଆଶୀର୍ବାଦ । ସମ୍ଭ୍ରାନ୍ତ ପଟ୍ଟନାୟକ ପରିବାରରେ ପିତା ଗୋଲକକୃଷ୍ଣ ଓ ମାତା ରାଧାଦେବୀଙ୍କ ମଧ୍ୟମ ପୁତ୍ର ହେଉଛନ୍ତି ବିଚ୍ଛନ୍ଦଚରଣ । ଜ୍ୟେଷ୍ଠ ପୁତ୍ର ସ୍ୱନାମଧନ୍ୟ ଶିକ୍ଷାବିତ୍ ପଦ୍ମଚରଣ ପଟ୍ଟନାୟକ ଏବଂ କନିଷ୍ଠ ପୁତ୍ର କାଳୀଚରଣ ପଟ୍ଟନାୟକ । ତିନି ଭାଇ ଯାକ ରୂପଲାବଣ୍ୟ-ସମ୍ପନ୍ନ ଦୀପ୍ତିମନ୍ତ ପୌରୁଷ ଓ ପ୍ରତିଭାଧର ସୁପୁରୁଷ ଥିଲେ । ଗୌରବର୍ଣ୍ଣ, ସୁବଳିତ ଅଂଗ, ପ୍ରଶସ୍ତ ଲଲାଟ, ଉଜ୍ଜ୍ୱଳ ମୁଖମଣ୍ଡଳକୁ ଚାହିଁଲେ ମନେ ହେଉଥିଲା, ଏମାନେ ରାଜକୁମାର । ଜୀବନର ଶେଷକାଳ ପର୍ଯ୍ୟନ୍ତ ଏମାନଙ୍କ କାନ୍ତି ଅମଳିନ ରହିଥିଲା । କନିଷ୍ଠ କାଳୀଚରଣ ସବ୍‌ରେଜିଷ୍ଟ୍ରାର ଥିବାବେଳେ ଅକାଳରେ ଇହଧାମ ତ୍ୟାଗ

କରିଥିଲେ । ଜ୍ୟେଷ୍ଠ ପଦ୍ମଚରଣ ବିଭିନ୍ନ ଶିକ୍ଷାନୁଷ୍ଠାନରେ କାର୍ଯ୍ୟ କରି କଟକ କଲେଜିଏଟ ସ୍କୁଲର ପ୍ରଧାନଶିକ୍ଷକ ପଦରେ ଅଧିଷ୍ଠିତ ହୋଇଥିଲେ ଓ ସେଠାରେ ସେହି ଗୌରବାଢ୍ୟ ପଦରେ ସେ ସରକାରୀ ଚାକିରୀରୁ ଅବସର ନେଇଥିଲେ । ସୌମ୍ୟମୂର୍ତ୍ତି ପଦ୍ମଚରଣଙ୍କ ବେଶଭୂଷା ଓ ଆଚରଣରେ ସମ୍ଭ୍ରାନ୍ତ ପରିବାରର ଗାମ୍ଭୀର୍ଯ୍ୟ ଓ ମଧୁରତା ମୁଦ୍ରାଙ୍କିତ ହୋଇ ରହିଥିଲା । ଛାତ୍ର ବତ୍ସଳ, ଗୁଣଗ୍ରାହୀ ପଦ୍ମଚରଣଙ୍କର କାର୍ଯ୍ୟ ପ୍ରୀତି ଥିଲା ଜୀବନର ମୂଳମନ୍ତ୍ର । ଓଡ଼ିଶାର ଛାତ୍ରମାନଙ୍କର ଦୁର୍ବଳ ସ୍ୱାସ୍ଥ୍ୟ ଦେଖି ସେ ବ୍ୟସ୍ତ ବିବ୍ରତ ହୋଇ ପଡ଼ୁଥିଲେ । ଶାରୀରିକ ଦୁର୍ବଳତାକୁ ନ ଘୁଞ୍ଚାଇଲେ ଛାତ୍ର ସମାଜର ମାନସିକ ବଳିଷ୍ଠତା ଆସିବ ନାହିଁ ବୋଲି ସେ ମତପ୍ରକାଶ କରୁଥିଲେ । ଶାରୀରିକ ସ୍ୱାସ୍ଥ୍ୟରକ୍ଷା ଲାଗି ସୁଲଭ ପୌଷ୍ଟିକ ଖାଦ୍ୟ କିପରି ଉପଯୋଗ କରାଯିବ ସେଥିପାଇଁ ସେ ବହୁ ସୁଚିନ୍ତିତ ମନ୍ତବ୍ୟ ଦେଇଛନ୍ତି । ବିଦ୍ୟାଳୟମାନଙ୍କରେ ମିଠା ଓ ସିଙ୍ଗଡ଼ା ପରିବର୍ତ୍ତେ ଗଜାମୁଗ, ଗୁଡ଼ ଓ ନଡ଼ିଆର ଜଳଖିଆ ସେ ପ୍ରବର୍ତ୍ତନ କରାଇଥିଲେ । ହାଣ୍ଡିଆ କୁଣ୍ଡାର ପିଠା କରି ଅଁଳା କୋଳି ଆଦିର ସହିତ ଖାଇବାକୁ ସେ ପ୍ରବର୍ତ୍ତାଉ ଥିଲେ । "ଓଡ଼ିଆଙ୍କ ଖାଦ୍ୟ ଓ ସ୍ୱାସ୍ଥ୍ୟ" ପୁସ୍ତକ ଖଣ୍ଡିକ ରଚନା କରି ଓଡ଼ିଆଙ୍କ ପର୍ବପର୍ବାଣୀ ଉପବାସର ବୈଜ୍ଞାନିକ ସାର୍ଥକତା ଉଦ୍‌ଘାଟନ କରି ଜାତୀୟ ସ୍ୱାସ୍ଥ୍ୟର ଅଭିବୃଦ୍ଧି ନିମିତ୍ତ ସେ ଯେଉଁ ଦିଗଦର୍ଶନ ଦେଇ ଯାଇଛନ୍ତି ତାହା ଏବେ ମଧ୍ୟ ଗଭୀର ପ୍ରଣିଧାନଯୋଗ୍ୟ । ପରିଣତ ବୟସରେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କ ଉଜ୍ଜ୍ୱଳ ସ୍ୱାସ୍ଥ୍ୟ ଅକ୍ଷୁଣ୍ଣ ଥିଲା ଓ ସେ କର୍ମଠ ଓ ବଳିଷ୍ଠ ଥିଲେ । ସେ ଯାହା କହୁଥିଲେ ତାହା ଆଚରଣ କରୁଥିଲେ ଏବଂ ଏହାହିଁ ଥିଲା ତାଙ୍କ ଶିକ୍ଷକ ଜୀବନର ବୀଜମନ୍ତ୍ର । ବଡ଼ ଭାଇ ଭାବରେ ସେ ବିଚ୍ଛନ୍ଦଚରଣଙ୍କୁ ଅତ୍ୟନ୍ତ ସ୍ନେହ ଦୃଷ୍ଟିରେ ଦେଖୁଥିଲେ ଓ ପିତା ଗୋଲକକୃଷ୍ଣଙ୍କ ସମଗ୍ର ପରିବାରର ଭରଣ ପୋଷଣ ଭାର ନିଜ କାନ୍ଧରେ ଦୀର୍ଘ ଦିନ ବହନ କରିଥିଲେ । ବଡ଼ ଭାଇଙ୍କ କଥା ଉଲ୍ଲେଖ କଲାବେଳେ କୃତଜ୍ଞତାରେ ବିଚ୍ଛନ୍ଦଚରଣ ନଇଁ ପଡ଼ୁଥିଲେ ଓ ତାଙ୍କ ନେତ୍ର ସଜଳ ହୋଇ ଉଠୁଥିଲା । ପରବର୍ତ୍ତୀ ସମୟରେ ଭାଇ ଭାଇଙ୍କ ମଧ୍ୟରେ ପାରିବାରିକ କାରଣରୁ ମନୋମାଳିନ୍ୟ ଘଟିଥିଲା, କିନ୍ତୁ ଦୁଇଭାଇଯାକ ସେ ବିଚ୍ଛେଦ-ନଦୀକୁ ପହଁରି ପାରିହୋଇ ଯାଇଥିଲେ । ଆଦ୍ୟ ଜୀବନ ପରି ଶେଷ ଜୀବନରେ ଦୁହେଁ ଦୁହିଁଙ୍କ ସହିତ ଅଚ୍ଛେଦ୍ୟ ଭ୍ରାତୃତ୍ୱ ବନ୍ଧନରେ ବନ୍ଧା ପଡ଼ିଥିଲେ ।

ପିତା ଗୋଲକକୃଷ୍ଣ ଏକ ସମ୍ପନ୍ନ ପରିବାରର ସନ୍ତାନ ହୋଇଥିଲେ ହେଁ ନିଜର ଅମିତବ୍ୟୟିତା ଓ ଅବିଚାରିତ ଦାନଶୀଳତା ହେତୁ ଅଳ୍ପକାଳ ମଧ୍ୟରେ ସର୍ବସ୍ୱ ହରାଇ ବସିଲେ । ଉତ୍କଟ ଦାରିଦ୍ର୍ୟର କରାଳ ଛାୟା ଚାରିଆଡ଼େ ମାଡ଼ି ଆସିଲା । ଅଭାବ ସମୁଦ୍ରରେ ଗୋଲକକୃଷ୍ଣଙ୍କ ପାରିବାରିକ ଡ଼ଙ୍ଗା ଉବେଇ ଟୁବେଇ ହେବାକୁ

ଲାଗିଲା । ଜ୍ୟେଷ୍ଠ ପୁତ୍ର ପଦ୍ମଚରଣ ମଙ୍ଗ ଧରି ନଥିଲେ ହୁଏତ ଡଙ୍ଗା ବୁଡ଼ିଯାଇଥାନ୍ତା । କିନ୍ତୁ ଗୋଲକକୃଷ୍ଣଙ୍କ ପରି ଭଗବତବିଶ୍ୱାସୀ ବ୍ୟକ୍ତିଙ୍କୁ ଓ ତାଙ୍କ ପରିବାରକୁ ଉଦ୍ଧାରି ନେବା ପାଇଁ ଭଗବାନ ତାଙ୍କୁ ପଦ୍ମଚରଣଙ୍କ ପରି ବଡ଼ ପୁଅଟିଏ ଦେଇଥିଲେ ।

ଗୋଲକକୃଷ୍ଣ ପଟ୍ଟନାୟକଙ୍କ ଚଳଣି ମଧ୍ୟଯୁଗୀୟ ଆଭିଜାତ୍ୟ ପୁଷ୍ଟ ଥିଲା । ସେ ଥିଲେ ଜଣେ ଛାନ୍ଦ-ରସିକ ବ୍ୟକ୍ତି । ଜହ୍ନ ରାତିରେ ଘଣ୍ଟି ଘାଗୁଡ଼ି ଶୋଭିତ ବଳଦ ଗାଡ଼ିରେ ଦୂରପଥ ଯିବା ବେଳେ ସେ ନିଜ ସ୍ୱରରେ ଛାନ୍ଦ ଗାନ କରୁଥିଲେ । ତାଙ୍କର ସ୍ୱର ଲହରୀ ନିର୍ଜନ ପରିବେଶରେ ଅଜାଡ଼ି ହୋଇ ପଡ଼ୁଥିଲା । ବାରି ହୋଇ ପଡ଼ୁଥିଲା ଯେ ଗୋଲକକୃଷ୍ଣ ପଟ୍ଟନାୟକ ଗାଡ଼ିରେ ଯାଉଛନ୍ତି । ଗୋଲକକୃଷ୍ଣ ୧୯୪୪ ମସିହାରେ ନରଲୀଳା ସମ୍ବରଣ କରିଥିଲେ । ସେତେବେଳକୁ ବାଞ୍ଛନ୍ଦ-ଚରଣ ଚତୁର୍ଦ୍ଦଶ ବର୍ଷର ଯୁବକ । ତାର ଦୁଇ ବର୍ଷ ପରେ ମାତା ରାଧାଦେବୀଙ୍କ ପ୍ରୟାଣ ଘଟିଲା । ଆବାଲ୍ୟରୁ ବାଞ୍ଛନ୍ଦଚରଣଙ୍କ ଦାରିଦ୍ର୍ୟ ଓ ଅନାଟନ ସାଥି ରହିଥିଲା । ସେଥିପାଇଁ ଆଜୀବନ ସେ ଦରିଦ୍ରମାନଙ୍କ ଦୁଃଖ କଷ୍ଟରେ ସମ୍ବେଦନଶୀଳ ଥିଲେ । ଦାରିଦ୍ର୍ୟ ସଙ୍ଗକୁ ଶାରୀରିକ ଅସାମର୍ଥ୍ୟ ତାଙ୍କର ସହଚର ହୋଇଥିଲା । ବାଲ୍ୟ ବୟସରେ ସେ ଚାଲିପାରୁ ନଥିଲେ ; କେବଳ ଗୁରୁଣ୍ଡି ଗୁରୁଣ୍ଡି ଯାତାୟତ କରୁଥିଲେ । ଯେଉଁ ବୟସରେ ସାଙ୍ଗସାଥିମାନେ ଧାଁ ଧପଡ଼ କରି ଖେଳିବୁଲି ପାରୁଥିଲେ, ସେ ବୟସରେ ଭୂଇଁରେ ଗୁରୁଣ୍ଡିବା କେଡ଼େ ଦୟନୀୟ ଅବସ୍ଥା ହୋଇ ନଥିବ । ଯେତେବେଳେ ଜଣା ପଡ଼ିଲା ଯେ ବାଞ୍ଛନ୍ଦଚରଣ ଜୀବନରେ ଆଉ ଚାଲିପାରିବେ ନାହିଁ, ସେତେବେଳେ ତାଙ୍କୁ ଠିଆ କରାଇବାକୁ ଓ ଚଲାଇବାକୁ ନାନା ଚିକିତ୍ସାର ଆଶ୍ରୟ ନିଆଗଲା । ଅଣ୍ଟାଏ ଗାତ ଖୋଳି ତାଙ୍କୁ ଠିଆ କରାଇ ମାଟିରେ ଅଣ୍ଟାଯାଏ ପୋତି ରଖାଯାଉଥିଲା ଓ ଦୀର୍ଘକାଳ ସେ ସେହି ଅବସ୍ଥାରେ ସମ୍ଭାଳି ହୋଇ ରହୁଥିଲେ । ପ୍ରଚଣ୍ଡ ମନୋବଳ ନଥିଲେ, ବାଞ୍ଛନ୍ଦଚରଣ ହୁଏତ ଭାଙ୍ଗି ପଡ଼ିଥାନ୍ତେ । କିନ୍ତୁ ପ୍ରତିକୂଳ ପରିବେଶରେ ଭାଙ୍ଗି ପଡ଼ିବା ତାଙ୍କ ଜାତକରେ ନଥିଲା । ଶେଷରେ ବାଞ୍ଛନ୍ଦଚରଣ ଠିଆହେଲେ, ବାଡ଼ିକୁ ଆଶ୍ରାକରି ଅଳ୍ପ ବହୁତେ ଗ୍ରେଟେଇ ଗ୍ରେଟେଇ ଚାଲିଲେ । ଜୀବନ ସାରା ତାଙ୍କୁ ଏହି ଅବସ୍ଥାରେ ଚାଲିବାକୁ ପଡ଼ିଥିଲା । କିନ୍ତୁ ସେଥିପାଇଁ ଦିନେ ସେ ମଉଳିଯିବା କେହି କେବେ ଲକ୍ଷ୍ୟ କରିନାହିଁ । ସେ ଲେଖିଥିଲେ—

"ଜନମୁଁ ଖଞ୍ଜ ମୋ ପୟର
ଚାଲିବା ସୁଖ ନାହିଁ ମୋର ।"

ବାଲ୍ୟକାଳରୁ ଦାରିଦ୍ର୍ୟ ସଙ୍ଗରେ ଏହି ଯନ୍ତ୍ରଣା ଯେ କେତେବଡ଼ ପ୍ରତ୍ୟବାୟ ସୃଷ୍ଟି କରିବସିଲା ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ବାଳକଟିର ସୁଠାମ ଅଙ୍ଗ ସୌଷ୍ଠବ ସଙ୍ଗରେ ଯନ୍ତ୍ରଣାକୁ ଏକ ଦାରୁଣ ଦୁର୍ବିପାକ ଛଡ଼ା ଆଉ କଅଣ କୁହାଯାଇପାରେ । ବାଞ୍ଛାନିଧିଚରଣଙ୍କ ଭବିଷ୍ୟତ ବିଷୟରେ କେତେ ଆଶା ମଞ୍ଜିଳ ଗଲା ପିତା, ମାତା, କୁଟୁମ୍ବ ସ୍ୱଜନଙ୍କର । ସେ ନିଜେ ଦେଖିଲେ, ତାଙ୍କ ଜୀବନର ଅନେକ ଆଶା-କଳିକା ବୃନ୍ତଚ୍ୟୁତ ହୋଇ ଝଡ଼ି ଯାଉଛି ନିୟତିର ବିଚିତ୍ର ବିଧାନରେ । ଅନେକ ସମ୍ଭାବନାର କବାଟ ତାଙ୍କ ପାଇଁ ରୁଦ୍ଧ ହୋଇଯାଉଛି ।

ତଥାପି ବାଞ୍ଛାନିଧିଚରଣ ଜୀବନ ସଂଗ୍ରାମରୁ ଓହରି ଗଲେ ନାହିଁ । ଜୀବନର ଆହ୍ୱାନକୁ ସେ ସ୍ୱୀକାର କଲେ । ଶାଳୁଆ ଗଛର ଗଜା ପଥର ଭେଦକରି ଉଠିଲା ପରି ସେ କଠୋର ପରିସ୍ଥିତିର ମୁକାବିଲା କରି ଚାଲିଲେ ।

ଯାଆଁଳା ମଧ୍ୟଇଂରାଜୀ ସ୍କୁଲରେ ଯୋଗଦେଇ ଅଳ୍ପକାଳ ମଧ୍ୟରେ ବାଞ୍ଛାନିଧିଚରଣ ଜଣେ ମେଧାବୀ ଛାତ୍ର ଭାବରେ ଶିକ୍ଷକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଉଚ୍ଚ ପ୍ରାଇମେରୀ ବୃତ୍ତି ଲାଭ କରିସାରି ତାହାର ଦୁଇବର୍ଷ ପରେ, ବାଞ୍ଛାନିଧିଚରଣ ଯେତେବେଳେ ମଧ୍ୟଇଂରାଜୀ ପରୀକ୍ଷାରେ ବୃତ୍ତିଲାଭ କଲେ ସମସ୍ତେ ଭାବିଲେ, ଏ ବାଳକର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ନୁହେଁ । ସେତେବେଳକୁ ବାଞ୍ଛାନିଧି-ଚରଣଙ୍କୁ ଚଉଦ ବର୍ଷ ବୟସ । ତାଙ୍କ ବଡ଼ଭାଇ ପଦ୍ମଚରଣ ପଟ୍ଟନାୟକ ଖୋର୍ଦ୍ଧା ଉଚ୍ଚଇଂରାଜୀ ବିଦ୍ୟାଳୟରେ ସହକାରୀ ପ୍ରଧାନଶିକ୍ଷକ । ପିଲାଟିର ଭବିଷ୍ୟତ ଉଜ୍ଜ୍ୱଳ— ଏହି ଜ୍ଞାନରେ ବଡ଼ଭାଇ ତାଙ୍କୁ ଖୋର୍ଦ୍ଧା ବିଦ୍ୟାଳୟକୁ ନେଇଗଲେ । ବଡ଼ଭାଇ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଥିବାରୁ ତାଙ୍କ ସହିତ ଛାତ୍ରାବାସରେ ରହିବାକୁ ସୁଯୋଗ ପାଇଲେ ବାଞ୍ଛାନିଧିଚରଣ । ନିଜର ଅସହାୟତା ହେତୁ ଦୀର୍ଘକାଳ ଯାଆଁଳା ମାଟିକୁ ହାମୁଡ଼େଇ ଗୁରୁଣ୍ଡିବା ବେଳେ ହୃଦୟର ନିକଟତମ ପ୍ରଦେଶରେ ସେ ଯେଉଁ ସ୍ପର୍ଶ ପାଇଥିଲେ, ଆଶ୍ରୟ ଓ ଭରସା ପାଇଥିଲେ, ତାହାର ଅଳିଭା ସ୍ମୃତି ବାଞ୍ଛାନିଧିଚରଣଙ୍କର ଚିର-ସମ୍ପଦ ହୋଇ ରହିଥିଲା । ଯାଆଁଳାକୁ ସେ ଝୁରୁଥିଲେ । ଜୀବନସାରା ତାଙ୍କ ଚକ୍ଷୁର କେଉଁ ଏକ ନିଭୃତ କୋଣରେ ଜାଆଁଳା ପାଇଁ ଏକ ଅଶ୍ରୁବିନ୍ଦୁ ଅପେକ୍ଷମାଣ ହୋଇ ରହିଥିଲା । ଜନ୍ମଭୂମି, ଆଶ୍ରୟଭୂମି ଜାଆଁଳା ଦର୍ଶନ ପାଇଁ ପରିଣତ ବୟସରେ ମଧ୍ୟ ସେ ଉତ୍କଣ୍ଠିତ ହୋଇ ଉଠୁଥିଲେ । ଜାଆଁଳା ଯିବା ପାଇଁ ପରବର୍ତ୍ତୀ ସମୟରେ ତାଙ୍କୁ ଅନେକ ପ୍ରତ୍ୟବାୟ ଘଟିଲା । ବୃଥା ଅପବାଦକୁ ଆଦରରେ ଶିରୋଭୂଷଣ କରି ସେ ଯେଉଁ ସାହସର ସହିତ ତାଙ୍କ ଓ ଜାଆଁଳା ମଧ୍ୟରେ ଥିବା ଦୁର୍ଲଙ୍ଘ୍ୟ ପ୍ରାଚୀରକୁ ଅତିକ୍ରମ କରିଗଲେ, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ ।

ଜାଆଁଲା ଯାଇ ସେ ପ୍ରମାଣିତ କରିଦେଲେ ଯେ ମାତୃପ୍ରୀତିରେ ସେ କେବଳ ଜାଆଁଲା ଆସିଛନ୍ତି, କୌଣସି ଭୂମି ଲାଳସାରେ ନୁହେଁ । ହୃଦୟର କେଉଁ ସାଧୁ ଆବେଗର ବଶବର୍ତ୍ତୀ ହୋଇ ସେ ଦୁଷ୍କର କର୍ମରେ ହାତ ଦିଅନ୍ତି, ତାହା ବୁଝିବା ଲାଗି ସହୃଦୟତାର ଅଭାବ ସେ ମର୍ମେ ମର୍ମେ ଅନୁଭବ କରିଛନ୍ତି । ଜୀବନର ପରିପ୍ରେକ୍ଷୀ ବିସ୍ତରରେ କୁହାଯାଇପାରେ ଯାଆଁଳାରେ ସେ ଗୁରୁଣ୍ଡି ଥିଲେ ଏବଂ ଏବେ ବାଡ଼ ଭରା ଦେଇ ଠିଆ ହେଲେ ଖୋର୍ଦ୍ଧାରେ ।

ଖୋର୍ଦ୍ଧାରେ ଜୀବନକୁ ଉର୍ଦ୍ଧ୍ୱାଧର (Vertical) ଦୃଷ୍ଟିରେ ଦେଖିବାର ଅବକାଶ ପାଇଲେ ବିଚ୍ଛନ୍ଦଚରଣ । ଜଣେ ଅଧ୍ୟୟନ ପରାୟଣ ଛାତ୍ର ଭାବରେ ସେ ଶିକ୍ଷକମାନଙ୍କର ସ୍ନେହଭାଜନ ହୋଇଥିଲେ, କିନ୍ତୁ ତାଙ୍କ ସହଜାତ କବିତ୍ୱ ଶକ୍ତିର ବିକାଶ ଦେଖି ତାଙ୍କୁ ଜଣେ ପ୍ରତିଭାବାନ ବାଳକ ବୋଲି ସମସ୍ତଙ୍କ ଧାରଣା ଉପୁଜିଗଲା । ସେକାଳର ରାଜଭାଷା ଇଂରାଜୀରେ ବିଚ୍ଛନ୍ଦଚରଣଙ୍କ ବିଲକ୍ଷଣ ପାରଦର୍ଶିତା ହେତୁ ତାଙ୍କ ପ୍ରତି ଅନ୍ୟମାନଙ୍କର ସମ୍ମାନବୋଧ ସଞ୍ଚରିବାକୁ ଲାଗିଲା । ଇଂରାଜୀ କବିତାକୁ ଓଡ଼ିଆରେ ଓ ଓଡ଼ିଆ କବିତାକୁ ଇଂରାଜୀରେ ସରସ ସାବଲୀଳ ରୀତିରେ ସେ ଅନୁବାଦ କରି-ଦେଉଥିଲେ । ନିଜର ପରିସ୍ଫୁଟ କବିତ୍ୱ ଶକ୍ତିର ଅନ୍ତର୍ନିହିତ ରସାଣରେ ତାଙ୍କ ଅନୁବାଦ-ଗୁଡ଼ିକ ଅଧିକ ମର୍ମସ୍ପର୍ଶୀ ହେଉଥିଲା । ଉଭୟ ଭାଷାରେ ଦଖଲ ଥିବା ବ୍ୟକ୍ତି ଯଦି କବି ହୋଇଥାଏ, ତେବେ ତାହାର କବିତା ଅନୁବାଦ ମୌଳିକ ଓ ଜୀବନ୍ତ ରୂପ ଧାରଣ କରେ । ଅଭିଭାଷଣମାନଙ୍କୁ ଅନୁବାଦ କଲାବେଳେ ଅନୁବାଦକ ଯଦି ସ୍ୱୟଂ ଜଣେ ଉତ୍କୃଷ୍ଟ ବକ୍ତା ହୋଇଥାନ୍ତି ତେବେ ସେ ଅନୁବାଦରେ ଭାଷଣର ପ୍ରାଣୋଚ୍ଛ୍ୱାସ ଭରି ରହିଯାଏ । ଅନୁବାଦ କାର୍ଯ୍ୟ ଏକ ପ୍ରାଣହୀନ ଯାନ୍ତ୍ରିକ କାର୍ଯ୍ୟ ନୁହେଁ । ଅନୁବାଦକର ସୃଷ୍ଟିଧର୍ମୀ ପ୍ରତିଭା ହିଁ ଅନୁବାଦକୁ ଗୌରବଶ୍ରୀରେ ମଣ୍ଡିତ କରେ । ଦେଶଗତ ସଂସ୍କୃତିଗତ ତାରତମ୍ୟରୁ ବିଭିନ୍ନ ଭାଷାର ଭଙ୍ଗୀଗତ ତାରତମ୍ୟ ରହିଅଛି । ଅନୁବାଦକ ନିଜସ୍ୱ ପ୍ରତିଭା ଓ ଅବବୋଧ ବଳରେ ଗୋଟିଏ ଭାଷାର ଭଙ୍ଗୀକୁ ଆଉ ଗୋଟିଏ ଭାଷାର ଭଙ୍ଗୀ ସଙ୍ଗରେ ସମୀକରଣ କରାଇଥାଏ । ଏହି ସମୀକରଣର ସାର୍ଥକତା ଉପରେ ଅନୁବାଦ କାର୍ଯ୍ୟର ସାର୍ଥକତା ନିର୍ଭର କରେ । କିଶୋର ବୟସରୁ ବିଚ୍ଛନ୍ଦ-ଚରଣଙ୍କ ଠାରେ ଜଣେ ସମର୍ଥ ଅନୁବାଦକର ସକଳ ପ୍ରତିଭା ନିହିତ ଅଛି ବୋଲି ସୂଚନା ମିଳିଥିଲା ଓ ସେଥିଲାଗି ସେ ଶିକ୍ଷକ ଓ ଗୁରୁଜନଙ୍କ ମହଲରେ ପ୍ରଶଂସାଭାଜନ ହୋଇଥିଲେ । ଆଞ୍ଚଳିକ ସାହିତ୍ୟ ପତ୍ରିକାରେ ତାଙ୍କ ସ୍ୱରଚିତ କବିତା ଏବଂ ଅନୁବାଦମାନ ନିୟମିତ ପ୍ରକାଶିତ ହେଉଥିଲା ।

ଖୋର୍ଦ୍ଧା ରହଣିର ପ୍ରାୟ ଚାରିବର୍ଷ ବେଳକୁ ପଦ୍ମଚରଣ ପଟ୍ଟନାୟକ ସରକାରୀ

ସ୍ବୀକୃତିରେ ଉନ୍ନୀତ ହୋଇ ବାଲେଶ୍ବର ବଦଳି ହୋଇଗଲେ, ବିଚ୍ଛନ୍ଦଚରଣଙ୍କୁ ଖୋର୍ଦ୍ଧା ବିଦ୍ୟାଳୟ ଛାଡ଼ିବାକୁ ପଡ଼ିଲା ।

ଖୋର୍ଦ୍ଧା ବୀରଭୂମି, ଓଡ଼ିଶା ଇତିହାସର ଜାତୀୟ ରଣଶିବିର । ସ୍ମୃତିରୂପରେ ଅତୀତ ବୀରପୁରୁଷମାନଙ୍କର ରଣାଙ୍ଗନ ଅନୁଭୂତି ଖୋର୍ଦ୍ଧାର ମାନସିକ ବାତାବରଣରେ ପରିବ୍ୟାପ୍ତ । ବ୍ରିଟିଶମାନଙ୍କ ଦ୍ଵାରା ଭାରତ କବଳିତ ହେଉଥିଲା ବେଳେ ସର୍ବ-ଭାରତୀୟ ମହାସଂଗ୍ରାମର ଶେଷ ସ୍ଵାଧୀନ ଦୁର୍ଗ ମୁଣ୍ଡଟେକି ରହିଥିଲା ଖୋର୍ଦ୍ଧାରେ ଓ ସେହି ଦୁର୍ଗର ଭଗ୍ନାବଶେଷକୁ ଆଜିପୁଣି ଗୌରବର ଚିହ୍ନ ବକ୍ଷରେ ଧାରଣ କରି ଆସିଛି ଖୋର୍ଦ୍ଧା । ଭାରତର ସ୍ଵାଧୀନତା ସୂର୍ଯ୍ୟ ପୂର୍ଣ୍ଣ ଅସ୍ତମିତ ହେବା ପରେ ଅଳ୍ପକାଳ ବ୍ୟବଧାନରେ ବିଦ୍ରୋହର ପ୍ରଥମ ରଣଶିଙ୍ଘା ବାଜିଲା ଖୋର୍ଦ୍ଧାରୁ । ପାଇକ ବିଦ୍ରୋହ ଅଗ୍ନିରେ ଝାସ ଦେଇ ବୀର ଓଡ଼ିଆ ପୁଅମାନେ ଖୋର୍ଦ୍ଧାକୁ ରଣତୀର୍ଥରେ ପରିଣତ କରି ଦେଇଗଲେ । ଖୋର୍ଦ୍ଧାର ଏହି ଐତିହାସିକ ସ୍ଵାଭିମାନ ବିଚ୍ଛନ୍ଦଚରଣଙ୍କ ଶିରାପ୍ରଶିରାରେ ଜଡ଼ି ରହିଥିଲା । ବିଚ୍ଛନ୍ଦଚରଣ କହୁଥିଲେ, ଇଂରାଜମାନେ ହାଡ଼େ ହାଡ଼େ ଅନୁଭବ କରିଥିଲେ ଯେ ଓଡ଼ିଆମାନେ ଏକ ଦୁର୍ଦ୍ଧର୍ଷ ଜାତି । କଳାରେ, ଶିଳ୍ପନୈପୁଣ୍ୟରେ, ବାଣିଜ୍ୟରେ ତଥା ସାମରିକ ସାମର୍ଥ୍ୟରେ ଏମାନେ ପାରମ୍ପରିକ ପ୍ରତିଷ୍ଠାର ଅଧିକାରୀ । ଏମାନଙ୍କର ସବୁଠାରୁ ବଡ଼ ସମ୍ପଦ ହେଉଛି ସ୍ଵାଭିମାନୀ ମନୋବୃତ୍ତି । ବ୍ରିଟିଶମାନେ ଓଡ଼ିଆଙ୍କ ଏହି ମହାନ୍ ସମ୍ପଦକୁ ହରଣ କରି ନେବା ଲାଗି ଶାସକ ଆଳରେ ଯେଉଁ କୂଟନୈତିକ ଚକ୍ରାନ୍ତ କଲେ, ତାହାଫଳରେ ଓଡ଼ିଆମାନଙ୍କ ଆତ୍ମବିସ୍ମୃତି ଘଟିଲା ।

ଓଡ଼ିଆମାନେ ନିଜର ପରମ୍ପରା ପ୍ରତି ଉଦାସୀନ ହୋଇ ପଡ଼ିଲେ । ନିଜର ମୌଳିକତା ପ୍ରତି ଦୃଷ୍ଟି ଦେଲେ ନାହିଁ । ଓଡ଼ିଆମାନଙ୍କୁ ଅପଦାର୍ଥ ଜାତି ବୋଲି ଚିହ୍ନଣ କରାଗଲା ଓ ଓଡ଼ିଆମାନେ ସେହି କଥାରେ ଭଳି ଯାଇ ହୀନମନ୍ୟତାର କୋଟରେ ନଇଁ ପଡ଼ିଲେ । ପଡ଼ୋଶୀ ରାଜ୍ୟର ଅଧିବାସୀ ଏହାର ସୁଯୋଗ ନେଲେ । ଇତିହାସ ବହିରେ ହଣ୍ଟର ସାହେବ ଲେଖିଲେ, ଖ୍ୟାତ ଗ୍ରନ୍ଥରେ ଏ ଜାତିର ନାମୋଲ୍ଲେଖ ମିଳେ ନାହିଁ । ଏ ଜାତି ଗୋଟିଏ ହେଲେ ଉଲ୍ଲେଖଯୋଗ୍ୟ କାମ କରି ନାହିଁ, କିମ୍ବା ଗୋଟିଏ ହେଲେ ବିଜୟପ୍ରସୂ ଯୁଦ୍ଧ ଲଢ଼ି ନାହିଁ । ସେତିକିବେଳେ ପ୍ରଭାବଶାଳୀ ପଡ଼ୋଶୀ ରାଜ୍ୟରୁ ସ୍ଵର ଶୁଭିଲା, ଏ ଜାତିର କୀର୍ତ୍ତି ବୋଲି କିଛି ନାହିଁ କିମ୍ବା କେବେ ନଥିଲା । କୋଣାର୍କ ଭୁବନେଶ୍ଵର ମନ୍ଦିରରେ ପ୍ରକଟିତ କାରୁକଳା ଲାଗି ଏ ଜାତିର କିଛି ହେଲେ ଅବଦାନ ନାହିଁ । ବ୍ରିଟିଶମାନଙ୍କ ଅନୁଗତ ହୋଇ ପଡ଼ୋଶୀ ରାଜ୍ୟର ଅଧିବାସୀମାନେ ପ୍ରଭାବଶାଳୀ ହୋଇଉଠୁଥିଲା ବେଳେ ବ୍ରିଟିଶ

ପ୍ରଭାବକୁ ପ୍ରତିରୋଧ କରି ଓଡ଼ିଆ ଜାତି ଧନକୁ ଧନ ବ୍ରିଟିଶ ଶାସନର ରକ୍ତଚକ୍ଷୁର ଶୀକାର ହେଉଥିଲା । ବ୍ରିଟିଶମାନେ ଓଡ଼ିଶା ପ୍ରଦେଶର ସ୍ୱତନ୍ତ୍ର ସତ୍ତା ଲୋପ କରି ଦେଇଥିଲେ । ଏମିତି ଶୁଣାଗଲା, ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ । ଓଡ଼ିଆ ଭାଷାର ପରମ୍ପରା ନାହିଁ, ମୌଳିକତା ନାହିଁ, ତେଣୁ କିପରି ସହିତ ଏହି ଭାଷାର ବିଲୋପ ଘଟାଇ ଦିଆଯାଉ । ଓଡ଼ିଶାରୁ ସନିସ୍ତ ପ୍ରତିବାଦ ଆରମ୍ଭ ହୋଇ ଯେତେବେଳେ କୁହାଗଲା ଯେ ଓଡ଼ିଆଭାଷାର ଏକ ସମୁନ୍ନତ ସାହିତ୍ୟିକ ପରମ୍ପରା ନିଜସ୍ୱ ମୌଳିକତା ଘେନି ରହି ଆସିଅଛି ଓ ଏବେ ପୁରପଲ୍ଲୀରେ ମଧ୍ୟ ସଜୀବିତ ରହିଅଛି, ସେତେବେଳେ ଆଉ ଏକ ସାଂଘାତିକ ବିମୂର୍ଚ୍ଛିତ ସ୍ୱର ଉତ୍ତୋଳିତ ହେଲା ଯେ ଓଡ଼ିଆ ପ୍ରାଚୀନ ସାହିତ୍ୟ ବୋଲି ଯାହାକୁ କୁହାଯାଉଛି ତାହା ଅଶ୍ଳୀଳ କ୍ଳିଷ୍ଟ ଅଶୋଭନୀୟ ସାହିତ୍ୟ । ତାହା ସାହିତ୍ୟ ପଦବାଚ୍ୟ ନୁହେଁ । ଅନ୍ୟ ଭାଷାରେ ଅନୁବାଦିତ ହେଲେ ତାହାର କିଛି ମାତ୍ର ଭାବ ଗୌରବ ଲକ୍ଷିତ ହୋଇ ପାରିବ ନାହିଁ । କୁହାଗଲା, ତେଣୁ ନିଜ ପରମ୍ପରାରୁ ସମ୍ପୂର୍ଣ୍ଣ ଛିନ୍ନ ହୋଇ ବହିର୍ଗତ ପ୍ରଭାବରେ ଆତ୍ମ-ଜଳାଂଜଳି ଦେବା ଛଡ଼ା ଓଡ଼ିଆମାନଙ୍କର ଆଉ ଗତ୍ୟନ୍ତର ନାହିଁ । ହୀନମନ୍ୟତାରେ ଲିପ୍ତ ହୋଇ ରହିଥିବା ଓଡ଼ିଆମାନେ ମୁମୂର୍ଷୁ ଅବସ୍ଥାରେ ଏହି ପ୍ରସ୍ତାବମାନଙ୍କୁ ସ୍ୱୀକୃତି ଜଣାଇଲେ । କିନ୍ତୁ ଓଡ଼ିଆ ଜାତିର ଅବଚେତନ ମନରେ ପ୍ରତିବାଦ, ପ୍ରତିରୋଧର ତୋଫାନ୍ ଉଠୁଥିଲା । ସେହି ତୋଫାନ ଅନେକ ଦେଶପ୍ରାଣ, ସ୍ୱସଂସ୍କୃତି ଅଭିମାନୀ ସମକାଳୀନ ବ୍ୟକ୍ତିଙ୍କୁ ସ୍ପର୍ଶ କରିଛି, କିନ୍ତୁ ତାହାର ସାକାର ରୂପ ବିଚ୍ଛନ୍ଦଚରଣଙ୍କ ଚରିତ୍ରରେ କୁହାଟିବାକୁ ଲାଗିଲା । ବିଚ୍ଛନ୍ଦଚରଣ ସେତେବେଳକୁ ମାଟ୍ରିକୁଲେସନ ଛାତ୍ର । ଖୋର୍ଦ୍ଧା ଛାତ୍ର ସତ୍ୟବାଦୀ ବନ ବିଦ୍ୟାଳୟକୁ ବାହାରିଛନ୍ତି ବିଚ୍ଛନ୍ଦଚରଣ । ଦେଶପ୍ରାଣ, ଉତ୍କଳମଣି ଗୋପବନ୍ଧୁ ହେଉଛନ୍ତି ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରତିଷ୍ଠାତା । ତାଙ୍କରି ନେତୃତ୍ୱରେ ସ୍ୱାଧୀନତାବୋଧର ଅବାରିତ ସ୍ରୋତ ଓଡ଼ିଶାର ଜନ ଜୀବନରେ ପ୍ରବେଶ କରୁଥାଏ । ବିଦେଶୀ ପ୍ରଭାବରୁ ମୁକ୍ତ ହୋଇ ସ୍ୱଦେଶୀ ଜୀବନ ଯାପନ କରିବା ପାଇଁ ମହାତ୍ମା ଗାନ୍ଧିଙ୍କ ଆହ୍ୱାନର ବାର୍ତ୍ତାବହ ରୂପେ କାର୍ଯ୍ୟ କରୁଥାନ୍ତି ଗୋପବନ୍ଧୁ । ସତ୍ୟବାଦୀର "ପଞ୍ଚସଖା" ଙ୍କ ସାହଚର୍ଯ୍ୟ ଓ ପ୍ରତ୍ୟକ୍ଷ ପ୍ରଭାବରେ ବନ ବିଦ୍ୟାଳୟର ଛାତ୍ରମାନେ ଉଦ୍‌ବୋଧିତ ହେଉଥାନ୍ତି । ଭାରତୀୟ ଆଧ୍ୟାତ୍ମିକ କୃଷ୍ଟି ଅନୁମୋଦିତ ଜୀବନଯାପନ ପ୍ରଣାଳୀର ଆଦର୍ଶ ରୂପାୟିତ ହେଉଥାଏ ସାକ୍ଷୀଗୋପାଳ (ସତ୍ୟବାଦୀ)ର ଝୁରଥନା ବନରେ । ଡକ୍ଟର ମିତ୍ରଙ୍କ ଭାଷାରେ କହିଲେ, "ମାନବ ମୈତ୍ରୀର ପୃଷ୍ଠଭୂମିରେ ମହାଜାତୀୟତାର ଉଦଗ୍ର ଶକ୍ତିକୁ ବିଶ୍ୱ-ପ୍ରାଣତାର ମହାନ ଆଦର୍ଶରେ ରୂପାନ୍ତରିତ କରିବାପାଇଁ ସାଧନାର ପୀଠ ଥିଲା ସତ୍ୟବାଦୀ ବନବିହାର" । (୮) ବିଶ୍ୱପ୍ରାଣତା ଓ ମାନବମୈତ୍ରୀ ସହିତ ଅବିରୋଧ ଭାବରେ ଯେ ଜାତୀୟତାର ଶାଣିତବୋଧ ବିକାଶ ଲାଭ କରିପାରେ, ତାହାର ସାର୍ଥକ ଶିକ୍ଷା ହେଉଥିଲା ସତ୍ୟବାଦୀ ବନବିଦ୍ୟାଳୟରେ । ଜାତୀୟତା ଏକ ବିଚ୍ଛିନ୍ନତାବାଦୀ

ମନୋବୃତ୍ତିର ପ୍ରକାଶକ ନୁହେଁ । ପରଦ୍ୱେଷୀ ସଙ୍କୀର୍ଣ୍ଣ ଜାତୀୟତା ଅବଶ୍ୟ ବିଚ୍ଛିନ୍ନତାବାଦର ବୀଜମନ୍ତ୍ର ସଦୃଶ, କିନ୍ତୁ "ବସୁଧୈବ କୁଟୁମ୍ବକମ୍" ମନ୍ତ୍ରରେ ଉଦ୍‌ବୁଦ୍ଧ ବ୍ୟକ୍ତି ପକ୍ଷରେ ନିଜ କୁଳକୁଟୁମ୍ବ ପାଳନ ପୋଷଣରେ କୌଣସି ନୀତିଗତ ବ୍ୟାଘାତ ନଥାଏ । ବରଂ ବିଶ୍ୱକୁଟୁମ୍ବି ତାକୁ ଗ୍ରହଣ କରିଥିବା ବ୍ୟକ୍ତି, ନିଜ କୁଟୁମ୍ବର ଉପଯୁକ୍ତ ରକ୍ଷଣାବେକ୍ଷଣରେ ସମର୍ଥ ହୁଏ । ସତ୍ୟବାଦୀରେ ପ୍ରକଟିତ ସ୍ୱଦେଶୀ ଭାବନାକୁ ବିଦେଶୀ ସରକାର ସନ୍ଦିଗ୍ଧ ଚକ୍ଷୁରେ ଦେଖୁଥିଲେ, ଜାତୀୟ ଚେତନାକୁ ଭୁଲ ବୁଝାମଣାରେ ବିଚ୍ଛିନ୍ନତାବାଦ ବୋଲି ମୂଲ୍ୟାଙ୍କିତ କରୁଥିଲେ । କିନ୍ତୁ ଉଜ୍ଜ୍ୱଳ ସ୍ୱଦେଶୀ ଭାବନା ଓ ନିର୍ମଳ ଜାତୀୟ ଚେତନା ଓଡ଼ିଶାର ଯୁବଗୋଷ୍ଠୀ ମଧ୍ୟରେ ସମ୍ପ୍ରସାରିତ ହୋଇଯାଉଥିଲା ସତ୍ୟବାଦୀରୁ ।

ଉତ୍କଳମଣି ବୁଝିଥିଲେ ଯେ ଓଡ଼ିଆ ଆତ୍ମାର ଜାଗରଣ ଲାଗି ତାହାର ସମୃଦ୍ଧ ପ୍ରାଚୀନକୁ ସଂରକ୍ଷଣ ଓ ସଞ୍ଜୀବିତ କରିବାକୁ ପଡ଼ିବ । ତା ନହେଲେ ଓଡ଼ିଆ ସଂସ୍କୃତିର ପୁନର୍ଜାଗରଣ (ରେନାସାଁ) ସମ୍ଭବ ହେବ ନାହିଁ, ବରଂ ନବୀକରଣ ନାମରେ ଉଦ୍ଭଟ ବିଷୟମାନଙ୍କର ଉଦୟ ହେବ । ସେଥିପାଇଁ ସେ କହୁଥିଲେ, ଯାହା କିଛି ଜୀର୍ଣ୍ଣ ଓ ପୁରାତନ ତାହା ମୂଲ୍ୟହୀନ ନୁହେଁ । ଜୀର୍ଣ୍ଣ ବା କ୍ଷୟର ଉଦ୍ଧାରପାଇଁ ପ୍ରାଣପାତ ପର୍ଯ୍ୟନ୍ତ କଲେ ହିଁ ମନୁଷ୍ୟ ଜୀବନର ସାର୍ଥକତା ମିଳେ" । (୯) ଜୀର୍ଣ୍ଣ ମନ୍ଦିର ସଂସ୍କାର, ଜୀର୍ଣ୍ଣ ପୁଷ୍କରଣୀ ପଙ୍କୋଦ୍ଧାର ଯେପରି ଏକ ମହନୀୟ କାର୍ଯ୍ୟ, ଜୀର୍ଣ୍ଣ ସଂସ୍କୃତିରେ ନବଜୀବନ ସଞ୍ଚାର ସେହିପରି ଏକ ମହନୀୟ କର୍ତ୍ତବ୍ୟ । ପ୍ରୟୋଜନ ପଡ଼ିଲେ ପ୍ରାଣପାତ କରି ଏହି ମହାନ୍ କର୍ତ୍ତବ୍ୟକୁ ସମ୍ପାଦନ କରିବାକୁ ହେବ ବୋଲି ଉତ୍କଳମଣି ଉପଦେଶ ଦେଉଥିଲେ । ଗୋଟିଏ କଥାରେ କହିଲେ, ଓଡ଼ିଶା ଜନଜୀବନରେ ଜାତୀୟବାଦୀ ଚେତନା ଓ ସାଂସ୍କୃତିକ ପୁନର୍ଜାଗରଣର ଆନୟନ ଲାଗି ସତ୍ୟବାଦୀ ଶିକ୍ଷାୟତନରେ ଅହରହ ପ୍ରଚେଷ୍ଟା ଚାଲିଥିଲା ।

ବିଚ୍ଛନ୍ଦଚରଣ ନିଜ ଆତ୍ମ-ଜୀବନୀ ପୁସ୍ତକରେ ଲେଖିଛନ୍ତି, "୧୯୧୮ ମସିହା ବେଳକୁ ସତ୍ୟବାଦୀ ସ୍କୁଲ ଅଧ୍ୟାପନାରେ ଶ୍ରେଷ୍ଠ ପୀଠ ଥିଲା ବୋଲି ସେଠାକୁ ଗଲେ ମୁଁ ଜାତୀୟତାର ବାତାବରଣରେ ବଢ଼ି ହୋଇ ପାରିବି ଏହି ଆଶା ମୋତେ ସତ୍ୟବାଦୀ ସ୍କୁଲକୁ ଟାଣିନେଲା ।" (୧୦) ବିଚ୍ଛନ୍ଦଚରଣଙ୍କ ଭାଷାରେ "ବନବିଦ୍ୟାଳୟ ପରିବେଶ ପ୍ରାଚୀନ ଆର୍ଯ୍ୟ ଗୁରୁକୁଳର ରୂପ ଧାରଣ କରିଥିଲା । ଗୌରବାବହ ଆର୍ଯ୍ୟ ପରମ୍ପରାର ଏହା ଥିଲା ସ୍ମାରକ ।" ଶିକ୍ଷକମାନଙ୍କ ବିଷୟରେ ସେ କହିଛନ୍ତି, "ଶିକ୍ଷକମାନେ ଖୁବ୍ ବିଦ୍ୱାନ୍ ହେଲେ ମଧ୍ୟ ସରଳତାର ଅବତାର ଥିଲେ ।" ସରଳ ଜୀବନଯାପନ କରି ଉଚ୍ଚ ଚିନ୍ତାରେ ନିମଜ୍ଜିତ ହୋଇ ରହିବାପାଇଁ ଆଚରଣ-ସିଦ୍ଧ ଶିକ୍ଷା ସେମାନେ

ପ୍ରଦାନ କରୁଥିଲେ । "ଭାରତ ତଥା ଉତ୍କଳକୁ ବିଜାତୀୟ ଶାସନ ଓ ବିଜାତୀୟ ସଂସ୍କୃତିର ଅହିତକର ପ୍ରଭାବରୁ ମୁକ୍ତ କରିବା ସେମାନଙ୍କର ବ୍ରତ ଥିଲା ।" (୧୧)

"ସତ୍ୟବାଦୀ ସ୍କୁଲ ଆବହାଓ୍ୱାରେ ଦେଶପ୍ରାଣତା ପୂରିଥିଲା । ସମୁଚ୍ଚ ଚରିତ୍ର ଗୁରୁଙ୍କ ଗୁରୁଙ୍କ ଛାତ୍ରମାନଙ୍କ ମନରେ ସଞ୍ଚାରିତ ହୋଇଯାଉଥିଲା ।" "ମୁଁ ମୂଳରୁ ଏହି ସ୍କୁଲରେ କାହିଁକି ପଢ଼ି ନପାରିଲି ଭାବି ମୋ ମନରେ ଶୋଚନା ହେଲା ।" କାରଣ, ସେ ଅନୁଭବ କରୁଥିଲେ ଯେ "ନିଜର ଅନ୍ତର୍ନିହିତ ଆଦର୍ଶବାଦର ପରିପୋଷଣ ନିମନ୍ତେ ଏହାହିଁ ଥିଲା ସର୍ବୋତ୍କୃଷ୍ଟ ପୀଠ ।" (୧୨)

ଅବଶ୍ୟ ପରବର୍ତ୍ତୀ କାଳରେ ସତ୍ୟବାଦୀ ବନବିଦ୍ୟାଳୟରେ ଏହି ଉଚ୍ଚ ଆଦର୍ଶଗତ ମାନ ରକ୍ଷା କରିଯାଇ ପାରିଲା ନାହିଁ, କାନ୍ତି ଲୁପ୍ତ ହେବାକୁ ଲାଗିଲା । କିନ୍ତୁ ବିଚ୍ଛନ୍ଦଚରଣ ଯେଉଁ ସୌଭାଗ୍ୟମୟ ସମୟରେ ସତ୍ୟବାଦୀରେ ପହଞ୍ଚିଲେ, ତାହା ତାଙ୍କ "ଅନ୍ତର୍ନିହିତ ଆଦର୍ଶବାଦର"ର ପରିପୁଷ୍ଟି ପାଇଁ ବିଶେଷ ସହାୟକ ହୋଇଥିଲା । ସାକ୍ଷିଗୋପାଳ (ସତ୍ୟବାଦୀ) ହେଉଛି ବିଚ୍ଛନ୍ଦଚରଣଙ୍କ ମାମୁଁଘର । ସେ ମାମୁଁ ଘରେ ରହୁଥିଲେ ଓ ପ୍ରତ୍ୟହ ବଳଦ ଗାଡ଼ିରେ ବନବିଦ୍ୟାଳୟକୁ ଆସୁଥିଲେ । କିନ୍ତୁ ଏକାଦଶଶ୍ରେଣୀରେ ପଢ଼ିବା ବର୍ଷକ ସେ ବନବିଦ୍ୟାଳୟର ଛାତ୍ରାବାସରେ କଟାଇଛନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର ତଥା ଆଚାର୍ଯ୍ୟ ହରିହରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ତାଙ୍କର ଜୀବନଚର୍ଯ୍ୟା ତଥା ବିଦ୍ୟାଶିକ୍ଷା ସମାହିତ ହେଉଥିଲା । ତାଙ୍କ ଆତ୍ମଜୀବନୀ ଗ୍ରନ୍ଥରେ ସେ ସମସ୍ତ ଗୁରୁମାନଙ୍କ ପ୍ରତି ସକୃତଜ୍ଞ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ସେ କହିଛନ୍ତି, "ଆଚାର୍ଯ୍ୟ ହରିହରଙ୍କ ବିଶାଳ ହୃଦୟ ଓ ଅଗାଧ ସ୍ନେହରେ ମୁଁ ଚିରଜୀବନକୁ ତାଙ୍କଠାରେ ବିକା ହୋଇ ଯାଇଅଛି । ମୁଁ ତାଙ୍କୁ ନର ଦେହଧାରୀ ଦେବତା ବୋଲି ଜ୍ଞାନ କରି ଆସିଅଛି ।" (୧୩)

୧୯୬୦ ମସିହାରେ ପୁରୀକେନ୍ଦ୍ରରୁ ବିଚ୍ଛନ୍ଦଚରଣ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଲେ । ସେତେବେଳକୁ ତାଙ୍କ ବଡଭାଇ ପଦ୍ମଚରଣ ପଟ୍ଟନାୟକ ପୁରୀ ଜିଲ୍ଲା ସ୍କୁଲର ସହକାରୀ ଶିକ୍ଷକ ଭାବରେ ଅବସ୍ଥାପିତ ହୋଇଥାନ୍ତି । ଭାଇଙ୍କ ସହିତ ସେ ରହୁଥିଲେ ପୁରୀ ସହରର ଦୋଳମୁଣ୍ଡି ସାହିରେ । ପରୀକ୍ଷାରେ କୃତିତ୍ୱ ସହିତ ସେ ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ ସତ, କିନ୍ତୁ ବୃତ୍ତି ଲାଭ କରି ପାରିଲେ ନାହିଁ । ପରୀକ୍ଷାର ଅବ୍ୟବହିତ ପୂର୍ବରୁ ଟାଇଫଏଡ୍ ଜ୍ୱରରେ ପୀଡ଼ିତ ହୋଇ ବିଚ୍ଛନ୍ଦଚରଣ ମାଟ୍ରିକ୍ୟୁଲେସନ୍ ବୃତ୍ତି ଲାଭରୁ ବଞ୍ଚିତ ହେଲେ ।

ଉଚ୍ଚଶିକ୍ଷା ଲାଗି ପ୍ରୟୋଜନୀୟ ବ୍ୟୟ ବହନ କରିବାକୁ ସ୍ୱଚ୍ଛନ୍ଦଚରଣଙ୍କ ପରିବାରର ସମ୍ବଳ ନଥିଲା । ପିତା ଗୋଲକକୃଷ୍ଣ ପରିଣତ ବୟସରେ ଶଯ୍ୟାଗ୍ରସ୍ତ ହୋଇ ବସିଥିଲେ । ପରିବାରର ଭରଣପୋଷଣ ଭାର ବହନ କରୁଥିବା ବଡ଼ଭାଇ ପଦ୍ମଚରଣ ସ୍ପଷ୍ଟ ଜଣାଇଦେଲେ ଯେ ସେ ଆଉ ସେ ଗୁରୁ ଦାୟିତ୍ୱ ସମ୍ପାଦନ କରି ପାରିବେ ନାହିଁ । ଚଳତ୍‌ଶକ୍ତି ଅସମର୍ଥ ଭାଇ ପାଇଁ ବ୍ୟୟବହୁଳ ଉଚ୍ଚଶିକ୍ଷାର ବା କି ପ୍ରୟୋଜନ । ଏହି ଅବସ୍ଥାରେ ପୁଣି ସ୍ୱଚ୍ଛନ୍ଦଚରଣଙ୍କୁ ବୃତ୍ତି ମିଳିଲା ନାହିଁ । ତେଣୁ ତାଙ୍କ ଅଧ୍ୟୟନ ପୋଥିରେ ଡୋର ବନ୍ଧା ହେଲା ବୋଲି ସମସ୍ତଙ୍କ ଧାରଣା ଉପୁଜିଲା ।

କିନ୍ତୁ ସ୍ୱଚ୍ଛନ୍ଦଚରଣ ସହଜରେ ହାରିଯିବା ବ୍ୟକ୍ତି ନଥିଲେ । ପ୍ରତିବନ୍ଧକତାକୁ ଉଲ୍ଲଂଘନ କରିଯିବା ପାଇଁ ତାଙ୍କର ଅମିତ ମନୋବଳ ଥିଲା । ଜୀବନରେ ସେ ଅବଶ୍ୟ ବଡ଼ ହେବେ, ଏହି ଅଭିଳାଷର ବଶବର୍ତ୍ତୀ ହୋଇ ନିଜ ସଂକଳ୍ପରେ ଅଟଳ ରହିଲେ ସ୍ୱଚ୍ଛନ୍ଦଚରଣ ।

ସ୍ୱଚ୍ଛନ୍ଦଚରଣଙ୍କ ଜନନୀ ରାଧାଦେବୀ ଥିଲେ ଜଣେ ଦୃଢ଼ମନା ରମଣୀ । ପରିସ୍ଥିତି ଚାପରେ ନଇଁ ଯିବା ତାଙ୍କ ଜାତକରେ ନଥିଲା । "ଅକୁତୋଭୟ ସ୍ପଷ୍ଟବାଦ ତାଙ୍କର ପରମଭୂଷଣ ଥିଲା । ଆମରଣ ଥରେ ସୁଦ୍ଧା ସେ କେବେ ଅନ୍ୟାୟ ସହିତ ସାଲିସ କରି ନାହାନ୍ତି ।" (୧୪) ମାତାଙ୍କର ଏହି ବିଲକ୍ଷଣ ଗୁଣର ଅଧିକାରୀ ହୋଇ ସ୍ୱଚ୍ଛନ୍ଦଚରଣ ଜନ୍ମଗ୍ରହଣ କରିଥିଲେ । ତାଙ୍କ ସମଗ୍ର ଜୀବନ ଥିଲା ଏକ ସାଲିସହୀନ ସଂଗ୍ରାମର ଇତିବୃତ୍ତ । ବାଲ୍ୟ କାଳରୁ ତାଙ୍କ ଅମଳିନ ପ୍ରତିଭାର ସ୍ପଷ୍ଟ ସଂକେତ ମିଳିଥିଲା । ତାଙ୍କ ଜୀବନ-ତରୁ ଶାଖା ମେଲାଇ ଯାଉଥିବା ବେଳେ ମନେ ହେଉଥିଲା ସତେ ଯେପରି ଏକ ଅନ୍ତର୍ନିହିତ ଅଜ୍ଞାତ ଅନୁପ୍ରେରଣାର ଚାପରେ ସେ ଆକୃଷ୍ଟ ହୋଇ କର୍ମକରି ଚାଲିଛନ୍ତି ।



୩

# ଉଚ୍ଚଶିକ୍ଷା ପଥେ

ଭଗବତ୍ କୃପା ଥିଲେ ପଙ୍ଗୁ ମଧ୍ୟ ପର୍ବତ ଲଙ୍ଘନ କରିପାରେ, ଏହି ଭରସାରେ ସମ୍ବଳ ସହାୟହୀନ ପିତା ଗୋଲକକୃଷ୍ଣ ତାଙ୍କର ନୟନ-ପିତୁଳା ମଧ୍ୟମପୁତ୍ର ଖଞ୍ଜପାଦର ବିଚ୍ଛନ୍ଦଚରଣଙ୍କୁ "ବ୍ୟଥାକୁଳ ହୃଦୟରେ" ମହାବିଦ୍ୟାଳୟ ଛାତ୍ରାବାସରେ ଛାଡ଼ିଦେଇ ଆସିଲେ । କଟକ କଲେଜିଏଟ୍ ସ୍କୁଲ୍ କୋଠାରେ ରେଭେନ୍ସା ମହାବିଦ୍ୟାଳୟ ସଂସ୍ଥାପିତ ହୋଇଥାଏ । ୧୯୨୦ ମସିହାର ପ୍ରଥମ ବାର୍ଷିକ ଶ୍ରେଣୀରେ ଯୋଗ ଦେଉ ଦେଉ ବିଦେଶୀ କବଳରୁ ଭାରତର ମୁକ୍ତି ପ୍ରୟାସୀ ମହାତ୍ମା ଗାନ୍ଧୀଙ୍କ ବିଦେଶୀ ବର୍ଜନ ଓ ଅସହଯୋଗ ଆନ୍ଦୋଳନର ଡାକଚିର ଢେଉ ପହଞ୍ଚିଲା ଓଡ଼ିଶାରେ । ଉତ୍କଳମଣି ଗୋପବନ୍ଧୁ ଓ ପଣ୍ଡିତ ନୀଳକଣ୍ଠଙ୍କ ଚରମ ତ୍ୟାଗର ଆଦର୍ଶ ଓ ଆହ୍ୱାନରେ ଉଦ୍‌ବେଳିତ ହୋଇଉଠିଲା ଯୁବ-ଜୀବନ । ଅସହଯୋଗ ମନ୍ତ୍ରକୁ ଅକ୍ଷରେ ଅକ୍ଷରେ ପାଳନ କରିବାପାଇଁ ଆଗ୍ରହୀ ଯୁବ-ସମାଜ କୃତ-ସଂକଳ୍ପ ହେଲେ । କାଠଯୋଡ଼ି ନଈ ବାଲିରେ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ଅଗ୍ନିବର୍ଷୀ ଭାଷଣ ପ୍ରଚଣ୍ଡ ବିସ୍ଫୋରଣ ସୃଷ୍ଟି କରୁଥାଏ । ସେହି ବିସ୍ଫୋରଣର ସ୍ଫୁଲିଙ୍ଗ ପତନରେ ନୀରବରେ ସଞ୍ଚିତ ଜାତୀୟ ସ୍ୱାଭିମାନ ବାରୁଦଗଦା ସବୁ ଜଳି ଉଠିଲା । "ଓକିଲମାନେ ଓକିଲାତି ତ୍ୟାଗ କଲେ, ସରକାରୀ କର୍ମଚାରୀମାନେ ଜୀବିକା ତ୍ୟାଗ କଲେ, ବେସରକାରୀ ଲୋକମାନେ ସକଳ ସରକାରୀ ସମ୍ପର୍କ ତ୍ୟାଗ କଲେ, ଛାତ୍ରମାନେ ସ୍କୁଲ୍ କଲେଜ ତ୍ୟାଗ କଲେ ଏବଂ ଜାତୀୟ ଜୀବନର ସବୁ କ୍ଷେତ୍ରରେ ଘୋର ବିଶୃଙ୍ଖଳା ଓ ଅସ୍ଥିରତା ଦେଖାଗଲା । ଜଣାଗଲା ଅସହଯୋଗର ଏ ଘୋର ବାତ୍ୟାକୁ ପ୍ରଶମିତ କରିବାକୁ ସ୍ୱରାଜ୍ୟ ଲାଭ ହିଁ ଏକମାତ୍ର ଉପାୟ ।" ମୁକ୍ତିକାମୀ ଯୁବସମାଜ ସ୍ୱରାଜ୍ୟ ଦାବୀକରି ବ୍ରିଟିଶ ଶାସନର ଖମ୍ବମାନ ଦୋହଲାଇ ଦେଲେ । ବିଚ୍ଛନ୍ଦଚରଣ ଲେଖିଛନ୍ତି, "ମୁଁ ଖଞ୍ଜ ହୋଇ ନଥିଲେ କେତେ କଅଣ କରନ୍ତି ଏ ଆନ୍ଦୋଳନରେ—ଏହିପରି କଳ୍ପନା ମୋ ଅନ୍ତରକୁ ଘାରି ପକାଉଥାଏ ।"

ବିଚ୍ଛନ୍ଦଚରଣ ଅନୁଭବ କଲେ ଜାତୀୟ ଜୀବନ ସ୍ରୋତରେ ସମ୍ପୂର୍ଣ୍ଣ ସାମିଲ ହେବା ପାଇଁ ତାଙ୍କ ଖଞ୍ଜତ୍ୱ ଏକ ପ୍ରବଳ ପ୍ରତ୍ୟବାୟ । ବିପ୍ଳବୀ ଜୀବନରେ ଚଳତ୍‌ଶକ୍ତି ହୀନତା ଦୁର୍ଦ୍ଦୈବର ଏକ ଚରମ ତିରସ୍କାର । ଖଞ୍ଜତା ବିଚ୍ଛନ୍ଦଚରଣଙ୍କ ଅଧ୍ୟୟନ

ଲିପ୍ସା ଓ ଉଚ୍ଚାକାଂକ୍ଷାର ପ୍ରତିବନ୍ଧକ ହୋଇଥିଲେ ହେଁ ତାଙ୍କ ଅଗ୍ରଗତିକୁ ପ୍ରତିହତ କରିପାରି ନଥିଲା । କିନ୍ତୁ ତାଙ୍କ ବିପ୍ଳବୀ ଓ ରାଜନୈତିକ ଜୀବନର ସମସ୍ତ ସମ୍ଭାବନାକୁ ସଉମୁଦ୍ କରିଦେଲା ଖଞ୍ଜତା । ତଥାପି ସ୍ୱରାଜ ଆନ୍ଦୋଳନକୁ "ନୈତିକ ସମର୍ଥନ" ଜଣାଇ ବିଚ୍ଛନ୍ଦଚରଣ ବିନା ଦ୍ୱିଧାରେ କଲେଜ ବର୍ଜନ କଲେ । ଯେଉଁ ଉଚ୍ଚଶିକ୍ଷାକୁ ଭବିଷ୍ୟତରେ ନିଜର ଭରଣପୋଷଣ ତଥା ଆତ୍ମସମ୍ମାନ ରକ୍ଷଣର ଏକମାତ୍ର ଆଶ୍ରୟ ଭାବି ବିଚ୍ଛନ୍ଦଚରଣ ଗ୍ରହଣ କରିଥିଲେ, ଦେଶପ୍ରାଣତାରେ ଉଦ୍‌ବୁଦ୍ଧ ହୋଇ ତାକୁ ସେ ଅକାତରେ ଜଳାଞ୍ଜଳି ଦେଇ ଘରକୁ ବାହୁଡ଼ି ଗଲେ । ପରିବାରରେ ମିଶ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । କିନ୍ତୁ ମାତା ରାଧାରାଣୀ ସଜଳ ନେତ୍ରରେ ନିଜର ନିରାଶ୍ରୟ ଶ୍ରେଷ୍ଠପୁଅର ଭବିଷ୍ୟତ ଚିନ୍ତାରେ ବ୍ୟାକୁଳ ହୋଇ ଉଠିଲେ । ସର୍ବମଙ୍ଗଳକର୍ତ୍ତ୍ରୀ ଭଗବତୀ ଶକ୍ତିଙ୍କ ଅପାରକରୁଣାରେ ଆସ୍ଥା ସ୍ଥାପନ କରି ନୀରବ ରହିଲେ ନିଃସମ୍ବଳ ପିତା ଗୋଲକ କୃଷ୍ଣ ।

୧୯୨୧ରୁ ୧୯୨୩ ପର୍ଯ୍ୟନ୍ତ ଦୁଇବର୍ଷରୁ କିଛି ଊର୍ଦ୍ଧ୍ୱକାଳ ସେ ଶିକ୍ଷାୟତନର ପରିବେଶରୁ ବିଚ୍ଛିନ୍ନ ହୋଇ ରହିଲେ, କିନ୍ତୁ ପ୍ରତି ମୁହୂର୍ତ୍ତକୁ ସେ ପୂର୍ଣ୍ଣପ୍ରାଣରେ ବିଦ୍ୟା ଅଧ୍ୟୟନରେ ହିଁ ବିନିଯୋଗ କରୁଥିଲେ । ଖଞ୍ଜତା ତାଙ୍କ ଜୀବନକୁ ସ୍ଥାଣୁ କରିଦେଇଥିଲା । ଏହି ମର୍ମବିଦାରକ ସ୍ଥାଣୁତ୍ୱର ଉପଯୁକ୍ତ ଉପଯୋଗ କରି ବସିଲେ ବିଚ୍ଛନ୍ଦଚରଣ । ଓଡ଼ିଆ, ହିନ୍ଦୀ, ବଙ୍ଗଳା, ସଂସ୍କୃତ ତଥା ଇଂରାଜୀ ସାହିତ୍ୟରେ ଥିବା ତାଙ୍କ ପାରଦର୍ଶିତାକୁ ସେ ଅଧିକ ଶାଣିତ କରିବାକୁ ଲାଗିଲେ । ଏକ ସ୍ଥାନରେ ଆସନଶୁଦ୍ଧି କରି ଦୀର୍ଘକାଳ ବସି ରହିବା, ପୁଣି କ୍ଷମତା ଓ ପୁରୁଷାର୍ଥ ସାଧନରେ ଅଖଣ୍ଡ ଭାବରେ ବିନିଯୁକ୍ତ ହୋଇପାରିବାର ଦକ୍ଷତା ତାଙ୍କଠାରେ ପ୍ରକଟିତ ହେଲା । ଖଞ୍ଜତ୍ୱ ଆଉ ଅଭିଶାପ ନହୋଇ ପ୍ରକାରାନ୍ତରରେ ଆଶୀର୍ବାଦର ଫଳ ଦେଲା । ବିଚ୍ଛନ୍ଦଚରଣ କହିଛନ୍ତି ଯେତେବେଳେ "ବିଦ୍ୟା ଥିଲା ମୋର ନିଃଶ୍ୱାସ, ଅଶନ ବସନ, ଆଭରଣ ଏବଂ ପଦେ କଥାରେ କହିଲେ ଜୀବନର ସର୍ବସ୍ୱ" । ତାଙ୍କର ଏହି ଅନନ୍ୟ ବିଦ୍ୟା-ନିଷ୍ଠା ତାଙ୍କୁ ସରସ୍ୱତୀଙ୍କ ବରପୁତ୍ର ହେବାର ଯୋଗ୍ୟତା ଦାନ କଲା ।

ଏହି ଦୁଇ କା ତିନି ବର୍ଷ ବିଚ୍ଛନ୍ଦଚରଣଙ୍କ ଜୀବନରେ ଏକ ନୂଆ ଦିଗନ୍ତ ଖୋଲିଦେଲା । ଆଦ୍ୟଯୌବନର ରୋମାଞ୍ଚ ତାଙ୍କୁ ଛୁଇଁ ଯାଉଥାଏ । ଚକ୍ଷୁର ପଲକ ପଲକରେ ମାଦକତା ଭରି ରହୁଥାଏ । ଏହି ବୟସରେ ବିଚ୍ଛନ୍ଦଚରଣ ତାଙ୍କ ପ୍ରାଣପ୍ରିୟା ପ୍ରଣୟିନୀ "ପ୍ରମିଳା"ଙ୍କୁ ଭେଟିଲେ ନିଜ ସାନଭଉଣୀ ବିବାହ ଉତ୍ସବ ଦିନରେ । ଦେଖିଲା ମାତ୍ରକେ ସେ ବୋଧକଲେ ଯେ ଜନ୍ମଜନ୍ମାନ୍ତରରେ ପତ୍ନୀ ତାଙ୍କର ପ୍ରିୟା ହୋଇ ଠିଆ ହୋଇଛନ୍ତି । ଅପୂର୍ବ ଲାବଣ୍ୟମୟୀ ବାଳିକା ପ୍ରିୟତମାଙ୍କୁ

ଏ ଜନ୍ମରେ ପତ୍ନୀରୂପରେ ପାଇବା ପାଇଁ ଉତ୍କଣ୍ଠିତ ହୋଇ ଉଠିଲେ ବିଚ୍ଛନ୍ଦଚରଣ । କିନ୍ତୁ ସେ ଜାଣିଥିଲେ ଯେ, ଯେଉଁ ପରିବାରରେ ସେ ଜନ୍ମଗ୍ରହଣ କରିଛନ୍ତି ତାହା ସମ୍ଭ୍ରାନ୍ତ ହେଲେ ହେଁ ବର୍ତ୍ତମାନ ନିଃସ୍ୱ, ନିଃସମ୍ବଳ ଏବଂ ତାଙ୍କ ରୂପଶ୍ରୀ ସୁନ୍ଦର ହେଲେ ହେଁ ଶାରୀରିକ କ୍ଷମତାରେ ସେ ଖର୍ବ । ଜୀବନର ଏହି ଉତ୍କଟ ବିରୋଧାଭାସ ତାଙ୍କୁ ଦୁର୍ଦ୍ଦୈବର ଦୁରତିକ୍ରମ୍ୟ ଉପହାସ ବୋଲି ବୋଧ ହେଲା । ପ୍ରତିପତ୍ତିଶାଳୀ ଉଚ୍ଚ-ଶିକ୍ଷିତ ଏକ ଧନାଢ୍ୟ ପରିବାରର ସର୍ବଗୁଣ ସଂପନ୍ନା ରୂପବତୀ ଅଲ୍ୟଲୀ କନ୍ୟାର ପାଣିଗ୍ରହଣ କରିବାକୁ ହେଲେ ତାହାଙ୍କୁ ତାହାର ଯୋଗ୍ୟ ହେବାକୁ ପଡ଼ିବ ଓ ସେ ଭାବିଲେ ଏହି ଯୋଗ୍ୟତା ସେ କେବଳ ଉଚ୍ଚଶିକ୍ଷା ଲାଭ ଦ୍ୱାରା ଅର୍ଜନ କରି ପାରିବେ । ତେଣୁ ପ୍ରୟୋଜନ ପଡ଼ିଲେ ପ୍ରାଣ ବିନିମୟରେ ଉଚ୍ଚଶିକ୍ଷା ଲାଭ କରିବାକୁ ସେ ସଂକଳ୍ପବଦ୍ଧ ହେଲେ । ପ୍ରଣୟ ଏବେ ଜୀବନର ପ୍ରୟୋଜନରେ ମିଶି ଅଦ୍‌ଭୁତ ପ୍ରେରଣାରେ ପରିଣତ ହେଲା ।

ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇବା ପାଇଁ ମହାବିଦ୍ୟାଳୟ ଅଧ୍ୟକ୍ଷ ଲମ୍ବାର୍ଟ ସାହେବଙ୍କୁ ପତ୍ର ଲେଖିଲେ ବିଚ୍ଛନ୍ଦଚରଣ । ଦୁଇବର୍ଷ ତଳେ ପ୍ରଥମ ବାର୍ଷିକ ଛାତ୍ର ଭାବରେ ବିଚ୍ଛନ୍ଦଚରଣଙ୍କ ଅସାଧାରଣ ପ୍ରତିଭା ଓ ଇଂରାଜୀ ଭାଷାରେ ବିଲକ୍ଷଣ ଦକ୍ଷତା ଲମ୍ବାର୍ଟ ତଥା ଅନ୍ୟାନ୍ୟ ଅଧ୍ୟାପକମାନଙ୍କୁ ଅଭିଭୂତ କରିଥିଲା । ତେଣୁ ଅନୁମତି ପତ୍ର ପାଇବାରେ ବିଳମ୍ବ ହେଲା ନାହିଁ । ପିତାଙ୍କ ସଙ୍ଗରେ ସେଦିନ ସେ ରେଭେନ୍‌ସା ମହାବିଦ୍ୟାଳୟ ପହଞ୍ଚିଗଲେ । ସେତେବେଳକୁ ରେଭେନ୍‌ସା ମହାବିଦ୍ୟାଳୟ ତାହାର ନିଜ ସୌଧକୁ ସ୍ଥାନାନ୍ତରିତ ହୋଇଥାଏ । ପୂର୍ବ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଖ୍ୟାତନାମା ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ଭେଟି ଗୋଲକକୃଷ୍ଣ ନିଜ ପୁତ୍ରକୁ ତାଙ୍କ ହାତରେ ସମର୍ପିଦେଇ ଆସିଲେ । ଘରୁ ପଇସାଟିଏ ସାହାଯ୍ୟ ପାଇବାର ସମ୍ଭାବନା ନଥିବା ଏହି ଉଚ୍ଚଶିକ୍ଷାଭିଳାଷୀ ପ୍ରତିଭା-ଅଙ୍କୁରକୁ ନିଜ ଯତ୍ନରେ ବଢ଼ାଇବାକୁ ଛାତ୍ରବତ୍ସଳ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଆଦର ସ୍ୱୀକୃତି ପ୍ରଦାନ କଲେ । ବିଚ୍ଛନ୍ଦଚରଣଙ୍କ ନିଜ ପରିଚୟ ଥିଲା ନିଜ ପ୍ରତିଭା । ଜୀବନରେ ସେ ଛିନ୍ନମୂଳ ବୋଲି ଅନୁଭବ କରୁଥିଲେ ହେଁ ପ୍ରତିଭାର ଡାଳପତ୍ରରୁ ଜଳକଣା ଆହରଣ କରି କେବଳ ବଞ୍ଚିବା ଆଶା ରଖି ନଥିଲେ ସେ, ଦିନେ ସେ ମହାମହୀରୁହରେ ପରିଣତ ହେବେ ସେ ଭରସା ମଧ୍ୟ ସଞ୍ଚିଥିଲେ । ବିଚ୍ଛନ୍ଦଚରଣ ଅନୁଭବ କଲେ, ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ବ୍ୟକ୍ତିତ୍ୱରେ ଆଶୀର୍ବାଦର ଗଙ୍ଗା ରୂପାନ୍ତ ହୋଇ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ୁଛି । ସୁଦୂରଦୃଷ୍ଟି ସମ୍ପନ୍ନ ପିତୃପ୍ରତିମ ଅଧ୍ୟାପକ ମହୋଦୟ ଦେଖି ପାରିଥିଲେ ଯେ ବିଚ୍ଛନ୍ଦଚରଣଙ୍କ ଠାରେ ଯେଉଁ ପ୍ରତିଭା ନିହିତ ଅଛି, ତାହାର ବିକାଶ ଘଟିଲେ କେବଳ ବ୍ୟକ୍ତିଗତ ଲାଭ ହେବନାହିଁ ବିଚ୍ଛନ୍ଦଚରଣଙ୍କର, ବରଂ

ଅଧିକନ୍ତୁ ଲାଭ ହେବ ଓଡ଼ିଆ ଜାତିର, ଓଡ଼ିଆ ସଂସ୍କୃତିର ଓ ଓଡ଼ିଆ ସାହିତ୍ୟର । ବିଶେଷ କରି ଜାତୀୟତାବାଦୀ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ସ୍ୱପ୍ନକୁ ସାକାର ରୂପ ଦେବା ଲାଗି ଏହି ତରୁଣ ଛାତ୍ର ହିଁ ଯେ ଦେବଦତ୍ତ ଆୟୁଧରୂପେ କାର୍ଯ୍ୟ କରିବ ତାହା ସେ ଲକ୍ଷ୍ୟ କରି ପାରିଥିଲେ । ଛନ୍ଦ-ଧର୍ମୀ ରାଗରାଗିଣୀମୟ ଓଡ଼ିଆ କାବ୍ୟ ସାହିତ୍ୟରେ ବିଚ୍ଛନ୍ଦଚରଣଙ୍କର ଅସାଧାରଣ ପ୍ରବେଶ ଥିଲା ଓ ସେ ଥିଲେ ସ୍ୱଭାବରେ ଭାବପ୍ରବଣ କବି ଓ ସୁଲେଖକ । ଓଡ଼ିଆ କାବ୍ୟ ସାହିତ୍ୟ ସମ୍ପଦର ସେ ଥିଲେ ଭକ୍ତ, ଅନୁରକ୍ତ ପୂଜାରୀ । ଇଂରାଜୀ ଭାଷାରେ ଧୁରନ୍ଧର ଦକ୍ଷତା ସାଙ୍ଗକୁ ଇଂରାଜୀ ଗଦ୍ୟ, ପଦ୍ୟ, ନାଟକ ସାହିତ୍ୟର ସମୃଦ୍ଧ ପରମ୍ପରା ସହିତ ତାଙ୍କର ଘନିଷ୍ଠ ଓ ନିବିଡ଼ ପରିଚୟ ଥିଲା । ଅନୁବାଦ କାର୍ଯ୍ୟରେ ବିଚ୍ଛନ୍ଦଚରଣଙ୍କ ଅପୂର୍ବ ସାମର୍ଥ୍ୟ ଦେଖି ପ୍ରବୀଣ ଅଧ୍ୟାପକମାନେ ଚକିତ ହୋଇ ଯାଉଥିଲେ । ତା ନ ହୋଇଥିଲେ କି ସେକାଳର ଅଧ୍ୟାପକ ଜଣେ ଆର୍ତ୍ତବଲ୍ଲଭ ମହାନ୍ତି ପରୀକ୍ଷକ ଭାବରେ ସଂସ୍କୃତ ପ୍ରଶ୍ନପତ୍ରର ଇଂରାଜୀ ଅନୁବାଦ ଅଂଶରେ ତାଙ୍କୁ ପରିପୂର୍ଣ୍ଣରୁ ପରିପୂର୍ଣ୍ଣ ନମ୍ବର ଦେଇଥାନ୍ତେ ? ସର୍ବୋପରି ଅଗାଧ ଓଡ଼ିଆ ପ୍ରୀତି ଓ ଅନମନୀୟ ଜାତୀୟ ସ୍ୱାଭିମାନବୋଧ ବିଚ୍ଛନ୍ଦ-ଚରଣଙ୍କର ଚରିତ୍ର-ସମ୍ପଦ ହୋଇ ରହିଥିଲା । ସୁସ୍ଥ, ସବଳ ସୁଶ୍ରୀ ସମ୍ପନ୍ନ ଯୁବକ ବିଚ୍ଛନ୍ଦଚରଣଙ୍କୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ତାଙ୍କ କଳ୍ପିତ ସାଂସ୍କୃତିକ ଅଭିଯାନର ଭବିଷ୍ୟତ ସେନାପତି କରି ବାଛିନେଲେ ।

ଆର୍ତ୍ତବଲ୍ଲଭ ସ୍ୱପ୍ନ ଦେଖୁଥିଲେ ଯେ, ଇଂରାଜୀ ଶିକ୍ଷିତ ସମାଜରେ ଅବହେଳିତ ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ପୁନଃ ପ୍ରତିଷ୍ଠିତ ହେବ । କାବ୍ୟକଳା ସମୃଦ୍ଧ ପ୍ରାଚୀନ ସାହିତ୍ୟ ସୃଷ୍ଟିକୁ ପୁନରୁଦ୍ଧାର ହେବ, ସେହି କାବ୍ୟକୃତିମାନଙ୍କର ଟୀକା ଟିପ୍ପଣୀ ସମନ୍ୱିତ ଶୁଦ୍ଧ ସଂସ୍କରଣ ମାନ ପ୍ରକାଶ ପାଇବ, ଓ ସେହି କାବ୍ୟ-ଗୌରବକୁ ପୃଥିବୀର ସର୍ବାଞ୍ଚଳରେ ପ୍ରଚାର କରିବା ପାଇଁ ଇଂରାଜୀ ଭାଷା ମାଧ୍ୟମରେ ଉତ୍କୃଷ୍ଟ ଅନୁବାଦ କାର୍ଯ୍ୟ କରାଯିବ । ଭାରତ ତଥା ବିଶ୍ୱରେ ଓଡ଼ିଶାର ମର୍ଯ୍ୟାଦା ପ୍ରଖ୍ୟାପନ କରିବାପାଇଁ ଉତ୍କଳୀୟ ସ୍ଥାପତ୍ୟ, କଳା, ସଂସ୍କୃତି, ସାହିତ୍ୟ ବିଷୟକ ଗବେଷଣା ମୂଳକ ନିବନ୍ଧମାନ ଇଂରାଜୀ ଭାଷାରେ ପ୍ରକାଶିତ ଓ ପ୍ରଚାରିତ ହେବ । ଏଥିପାଇଁ ସେ ଯେଉଁ ଅନୁଷ୍ଠାନ ଗଢ଼ିବାକୁ ଲାଗିଛନ୍ତି, ତହିଁରେ ଆଧୁନିକ ମୁଦ୍ରାଯନ୍ତ୍ର ରହିବ, ମୁଦ୍ରାଯନ୍ତ୍ରରୁ ମୁଦ୍ରିତ ହୋଇ ଉଚ୍ଚକୋଟୀର ପୁସ୍ତକ ଓ ପତ୍ରିକା ପ୍ରକାଶିତ ହେବ, ସମର୍ଥ କର୍ମୀ ଓ ସଙ୍ଗଠକ ରହିବେ ଏବଂ ପ୍ରତିଭାଧର ଲେଖକ ଅନୁବାଦକମାନେ କାମ କରିବେ । ଏହି କାର୍ଯ୍ୟମାନଙ୍କୁ ପରିଚାଳନା କରିବା ପାଇଁ ଯେଉଁଭଳି ଯୋଗ୍ୟତା ଓ ବ୍ୟକ୍ତିତ୍ୱସମ୍ପନ୍ନ ତରୁଣଙ୍କର ସେ ଅନୁସନ୍ଧାନ କରୁଥିଲେ, ଭଗବତ୍ ପ୍ରସାଦରୁ ତାଙ୍କ ହାତରେ ମିଳିଲେ ପ୍ରତିଭାବନ୍ତ ବିଚ୍ଛନ୍ଦଚରଣ । ଗୁରୁ ଓ ଶିଷ୍ୟ

ଉଭୟ ଉଭୟଙ୍କ ଦରୁ ଏ ମିଳନକୁ ଭଗବତ୍ ପ୍ରସାଦ ବୋଲି ଅନୁଭବ କଲେ ।

ଅର୍ଥାଭାବ ଜନିତ ଦୁସ୍ତର କ୍ଳେଶରୁ ଉଚ୍ଚ ଶିକ୍ଷାଲାଭ ସମ୍ଭବ ହେବ ନାହିଁ ବୋଲି ଯେଉଁ ଆଶଙ୍କା ଗୋଟି ରହିଥିଲି ତାହା ଚଳି ବଢ଼ିଦ ପରେ ଅପସରି ଯିବା ସମ୍ଭାବନା ଦର୍ଶିଲି । ବାଞ୍ଛାନିଧିଚରଣ ଲକ୍ଷ୍ୟକଲେ ଯେ ମେଘ ଫାଙ୍କରେ ତାଙ୍କ ସୌଭାଗ୍ୟ-ସୂର୍ଯ୍ୟ ଉଙ୍କି ମାରି ହସୁଛି । ବାମନ ହୋଇ ଚନ୍ଦ୍ର ଧରିବାକୁ ହାତ ବଢ଼ାଇ ନିରାଶ ହେବାକୁ ପଡ଼ିବ ନାହିଁ, ଯଦି ମହାପ୍ରଭୁ ତ୍ରିବିକ୍ରମଙ୍କ ଆଶୀର୍ବାଦ ଥାଏ । ବାଞ୍ଛାନିଧିଚରଣଙ୍କ ସହଜାତ ଉଚ୍ଚାଭିଳାଷ ଧାଇଁଲେ ଗାଢ଼ ଅନ୍ଧକାରମୟ ବାସ୍ତବ ଭବିଷ୍ୟତ କଥା ସ୍ମରଣ କରି ମାତା ରାଧାରାଣୀ ଜଗନ୍ନାଥଙ୍କ ଶରଣାପନ୍ନ ହୋଇଥିଲେ । ସେ ତାଙ୍କ ପୂଜା ରହଣୀ କାଳରେ ପ୍ରତିଦିନ ଗରୁଡ଼ସ୍ତମ୍ଭ ପାଖରେ ଅଶରଣ ଶରଣ ମହାବାହୁଙ୍କୁ ବାଞ୍ଛାନିଧିଚରଣଙ୍କ ପାଇଁ ସ୍ୱାସ୍ଥ୍ୟ ଓ ସୁରକ୍ଷା ପ୍ରାର୍ଥନା କରୁଥିଲେ । ସେଣେ ଗାଁରେ ପିତା ଗୋଲକକୃଷ୍ଣ ନିଜର ଏକମାତ୍ର ଭରସା "ଦାରୁଣୀ" ଦେବୀ (ମହିଷ ବିଦାରଣୀ)ଙ୍କ ପୀଠରେ ଆକୁଳ ଆକୁତି ଜଣାଉଥିଲେ ଅସହାୟ ପୁତ୍ର ବାଞ୍ଛାନିଧିଚରଣଙ୍କ ପାଇଁ । ବାପ ମା'ଙ୍କ ବିଗଳିତ ଲୋତକଧାରା ଭଗବାନଙ୍କ ଚରଣ ଧୋଉଥିଲା । ବାଞ୍ଛାନିଧିଚରଣଙ୍କ ଜୀବନର ଅକାଳ ବେଳାରେ ଅପ୍ରତ୍ୟାଶିତ ସାହାଯ୍ୟ ପ୍ରାପ୍ତି ସମ୍ଭବତଃ ଭଗବତ୍ ହସ୍ତକ୍ଷେପର ଫଳ । ବାଞ୍ଛାନିଧିଚରଣ ଅନ୍ତତଃ ତାହାହିଁ ବୁଝିଥିଲେ ।

ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରିବା ପାଇଁ ସକଳ ସୁବନ୍ଦୋବସ୍ତର ଆୟୋଜନ କରିଦେଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ । ତ୍ରୈମାସିକ ପରୀକ୍ଷାରେ ଅନନ୍ୟ ସାଧାରଣ କୃତିତ୍ୱ ଯୋଗୁଁ ବିଶେଷ ଖ୍ୟାତିର ସହିତ ବାଞ୍ଛାନିଧିଚରଣଙ୍କ ନାମ ଛାତ୍ର ଓ ଅଧ୍ୟାପକ ମହଲରେ ପ୍ରଚାରିତ ହେବାକୁ ଲାଗିଲା । ଅର୍ଥାଭାବ ଓ ଖଞ୍ଜତାଜନିତ ଆଶଙ୍କା ଓ ଗ୍ଳାନିରୁ ବାଞ୍ଛାନିଧିଚରଣଙ୍କ ଚଞ୍ଚଳସ୍ୱର ମନ ଆସ୍ତେ ଆସ୍ତେ ମୁକ୍ତ ହୋଇଗଲା । ସେ ଲେଖିଛନ୍ତି "ଏଣିକି ମୋର ଖଞ୍ଜତା ମୋର ଅଳଙ୍କାର ବିଶେଷ ହୋଇଗଲା ।" ଏହାପରି ମୋର ପ୍ରତୀତ ହେବାକୁ ଲାଗିଲା ଯେ ଯେଉଁଳି କୌଣସି ଗୁରୁତର ପ୍ରତ୍ୟବାୟ ଦୈବାଗତ ଉପସ୍ଥିତ ନହେଲେ ମୋ ଉଚ୍ଚଶିକ୍ଷା ଲାଭ ଆଉ ବ୍ୟାହତ ହୋଇ ପାରିବ ନାହିଁ । ଉତ୍କଳର ମହାତ୍ମା (ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି) ପ୍ରଭୃତି ଯେଉଁମାନେ ମୋତେ ଏବେ ଜାଣିପାରିଲେଣି ସେମାନେ ମୋ ପ୍ରତିଭା ଦୀପକୁ କଦାପି ନିଭିଯିବାକୁ ଦେବେ ନାହିଁ ।

ବାଞ୍ଛାନିଧିଚରଣଙ୍କ ଜୀବନରେ ସହାୟକତାର ଆଉ ଗୋଟିଏ ପ୍ରଖର ସ୍ରୋତ-ମୁଖ ଉନ୍ମୋଚିତ ହୋଇଗଲା । ଯେତେବେଳେ ପୁରୀର କଲେକ୍ଟର ଦେଓ୍ୟାନ

ବାହାଦୂର ଦୟାନିଧି ଦାସଙ୍କ ସହିତ ତାଙ୍କର ପରିଚୟ ହେଲା ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ବାସଭବନରେ । ବଞ୍ଛନିଧିଚରଣ ସେତେବେଳକୁ ଇଂରାଜୀ ଅନର୍ସର ଚତୁର୍ଥ-ବାର୍ଷିକ ଛାତ୍ର । ଦୟାନିଧି ଦାସ ତାଙ୍କ ପୁତ୍ର ନିମାଇଁଚରଣଙ୍କ ପାଇଁ ଜଣେ ଉତ୍ତମ ଗୃହ ଶିକ୍ଷକ ଖୋଜୁଥିଲେ । ନିମାଇଁ ଚରଣ ପଢୁଥିଲେ ଇଂରାଜୀ ଅନର୍ସର ତୃତୀୟ ବାର୍ଷିକ ଶ୍ରେଣୀରେ । ରେଭେନ୍‌ସା ମହାବିଦ୍ୟାଳୟର ଅଧ୍ୟକ୍ଷ, ସ୍ୱୟଂ ଇଂରାଜୀ ଅଧ୍ୟାପକ ଇଂରାଜୀ ଖ୍ରୀଷ୍ଟୀ ହ୍ୟୁଟଲିକ୍ ସାହେବ ନିମାଇଁ ଚରଣଙ୍କ ଗୃହଶିକ୍ଷକ ହେବା ପାଇଁ ବଞ୍ଛନିଧିଚରଣଙ୍କ ନାମକୁ ସୁପାରିଶ କରିଥାନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ଗିରିଜା ଶଙ୍କର ରାୟ ଏହି ସୁପାରିଶକୁ ସମ୍ପୂର୍ଣ୍ଣରୂପେ ଅନୁମୋଦନ କଲେ । ବୟସ କମ୍ବା ଶିକ୍ଷା ଶ୍ରେଣୀଗତ ଯୋଗ୍ୟତା ଦୃଷ୍ଟିରୁ ନୁହେଁ କେବଳ ପ୍ରତିଭା ଦୃଷ୍ଟିରୁ ବଞ୍ଛନିଧିଚରଣଙ୍କୁ ଗୃହଶିକ୍ଷକ ରୂପେ ଗ୍ରହଣ କରାଗଲା । ବଞ୍ଛନିଧିଚରଣଙ୍କ ସହିତ ନିମାଇଁ ଚରଣ ରେଭେନ୍‌ସା ମହାବିଦ୍ୟାଳୟ ପୂର୍ବ ଛାତ୍ରାବାସର ଏକ ପ୍ରଶସ୍ତ କୋଠରୀରେ ସ୍ଥାନ ପାଇଲେ ଓ ବଞ୍ଛନିଧିଚରଣଙ୍କ ସମସ୍ତ ପ୍ରୟୋଜନୀୟ ଖର୍ଚ୍ଚ ବହନ କଲେ ବିତ୍ତଶାଳୀ ଦୟାନିଧି ଦାସ । ବଞ୍ଛନିଧିଚରଣଙ୍କ ଜୀବନ ଅପେକ୍ଷାକୃତ ସୁଖାବହ ହୋଇ ଉଠିଲା । ଦୟାନିଧି ଦାସ ଓ ତାଙ୍କ ଧର୍ମପତ୍ନୀ ତିଲୋତ୍ତମା ଦେବୀ ବଞ୍ଛନିଧି-ଚରଣଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ ।

କିନ୍ତୁ ସବୁଦିନ ସୁଖରେ ଗଲାନାହିଁ । ଘଟଣା ଚକ୍ର ଭିନ୍ନ ମୋଡ଼ନେଲା । ବଞ୍ଛନିଧିଚରଣ ଖବର ପାଇଲେ ଯେ ତାଙ୍କ ପ୍ରେୟସୀ "ପ୍ର-"ର ବିବାହ-ନିର୍ବନ୍ଧ ସ୍ଥିର ହୋଇଗଲା । ଯାହାଙ୍କ ସହିତ ବିବାହ ହେବାପାଇଁ ନିର୍ବନ୍ଧ ହୋଇଗଲା, ସେ ହେଉଛନ୍ତି, ବଞ୍ଛନିଧିଚରଣଙ୍କର ଜଣେ ସହାଧ୍ୟାୟୀ ବନ୍ଧୁ ଏବଂ ବଞ୍ଛନିଧିଚରଣଙ୍କ ଠାରୁହିଁ "ପ୍ର-"ଙ୍କ ବିଷୟରେ କାବ୍ୟିକ ଗୁଣମାନ ଶୁଣି ଶୁଣି ସେ "ପ୍ର-"ଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ ଓ ବଞ୍ଛନିଧିଚରଣଙ୍କ ଅଜାଣତରେ ନିଜ ଉଦ୍ୟମରେ ଏ ନିର୍ବନ୍ଧ ବ୍ୟବସ୍ଥା କରାଇନେଲେ । ଏ ସମ୍ବାଦରେ ମର୍ମାହତ ହେଲେ ବଞ୍ଛନିଧିଚରଣ । ତାଙ୍କ ଜୀବନରେ ପ୍ରଳୟ ତୋଫାନ ବହିବାକୁ ଲାଗିଲା ଓ ଗୃହୀ ଜୀବନର ସକଳ ଅଭିଳାଷ ସହିତ ବଞ୍ଚିବାର ଇଚ୍ଛା ମଧ୍ୟ ଭୁଶୁଡ଼ିବାକୁ ଆରମ୍ଭ କଲା । ବିଦ୍ୟାଧ୍ୟୟନ ପରୀକ୍ଷା ଓ ଉଚ୍ଚାକାଙ୍କ୍ଷା ଲାଗି ଆଉ ମନବଳ ଟେକିଲା ନାହିଁ । ବି. ଏ. ଅନର୍ସ ପରୀକ୍ଷା ଫଳ ବାହାରିଲା ବେଳକୁ ଦେଖାଗଲା ଯେ ସେ ଇଂରାଜୀ ଅନର୍ସରେ ବିହାର ଓଡ଼ିଶାରେ ପ୍ରଥମସ୍ଥାନ ହରାଇଛନ୍ତି ଓ କେବଳ ଓଡ଼ିଶାରେ ପ୍ରଥମସ୍ଥାନ ପାଇଛନ୍ତି । ସେ ବର୍ଷ ସମସ୍ତେ ଦ୍ୱିତୀୟ ଶ୍ରେଣୀରେ ହିଁ ଅନର୍ସ ପାଇଥିଲେ ।

ସେ ବୋଧକଲେ, ତାଙ୍କ ଜୀବନରେ ଆଉ କିଛି ହେବା ନ ହେବାର

ସାର୍ଥକତା ରହିଲା ନାହିଁ । ଯେଉଁ ଆଶାରେ ସେ ଅକାଳ ଟେକ ବୋଇତ ମେଲିଥିଲେ, ମଝି ଦରିଆରେ ସେ ଆଶା ସହିତ ବୋଇତ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା ।

ଓଡ଼ିଶା ବାହାରକୁ ଯାଇ ପୁଣି ଭାଗ୍ୟ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ଇଂରାଜୀ ଏମ. ଏ ପଢ଼ିବା ଆକାଂକ୍ଷାରୁ ନିବର୍ତ୍ତି ଗଲେ ବାଞ୍ଛାନିଧି । ବି. ଏଲ କ୍ଲାସରେ ନାମଲୁ ମାତ୍ର ନାମ ଲେଖାଇ ପ୍ରଣୟିନୀବଧୂର ବାଞ୍ଛାନିଧି ଅଳକୂଳହୀନ ହାହାକାର ସମୁଦ୍ରରେ ଝାସଦେଲେ । ତାଙ୍କଠାରେ କ୍ରମଶଃ ଉନ୍ମାଦ ରୋଗର ସକଳ ଲକ୍ଷଣ ପ୍ରକାଶିତ ହେବାକୁ ଲାଗିଲା । ରୋଗ ଚିକିତ୍ସା ମାନିଲା ନାହିଁ । ତିନିମାସ କାଳ ଅଣାସୁଦ୍ଧ ଉନ୍ମାଦଗ୍ରସ୍ତ ହେବାପରେ ଦୀର୍ଘ ଦଶମାସ ସେ ମୂକ ହୋଇ ବସି ରହିଲେ । ଅଙ୍ଗ ପ୍ରତ୍ୟଙ୍ଗରୁ ସ୍ପର୍ଶ ଶକ୍ତି ଲୋପ ପାଇଗଲା । ଅଭିଜ୍ଞ ଡାକ୍ତର ଅଭିମତ ଦେଲେ ଯେ ବାଞ୍ଛାନିଧିଙ୍କ ମନ ଗୋଟିଏ ବିଷୟରେ ଅତି ନିବଦ୍ଧ ହୋଇ ରହିଥିବାରୁ "ଅନ୍ୟ କୌଣସି ଅନୁଭୂତି ପାଇଁ ତାଙ୍କ ମସ୍ତିଷ୍କରେ ଅବକାଶ ନାହିଁ ।" ସବୋନ୍ଦ୍ରିୟ ବୃତ୍ତିମାନଙ୍କରୁ ନିବୃତ୍ତ ହୋଇଗଲା ତାଙ୍କ ମନ । କେବଳ ଏକ ଅତି ଗଭୀର ଅନ୍ତର୍ମୁଖୀ ଭାବନାରେ ପ୍ରଣୟିନୀ-ପରାୟଣ ହୋଇ ବାଞ୍ଛାନିଧି ଯେଉଁ ପ୍ରଣୟ-ସାଧନାର ଦୁର୍ଲଭ ଦୃଷ୍ଟାନ୍ତ ଉପସ୍ଥାପନ କରିଗଲେ, ପ୍ରଣୟୀ ସଂସାରରେ ତାହା ଚିର ସ୍ମରଣୀୟ ହୋଇ ରହିଗଲା ।

ଏକ ବର୍ଷରୁ ଊର୍ଦ୍ଧ୍ୱ କାଳ ପ୍ରଣୟ-ସମାଧିରେ ବୁଡ଼ି ରହିବା ପରେ ଦିନେ ବାଞ୍ଛାନିଧି ବୋଧକଲେ ଯେ ତାଙ୍କ ପକ୍ଷରେ ଆଉ ବଞ୍ଚି ରହିବାର ସାର୍ଥକତା ନାହିଁ । ଅଗଣାରେ ଥିବା ଏକ ଗଭୀର କୂପ ଭିତରକୁ ସେ ଡେଇଁ ପଡ଼ିଲେ । ବହୁ ଯତ୍ନରେ ତାଙ୍କୁ ସେ କୂପରୁ ଉଦ୍ଧାର କରାଗଲା । ଏହି ଘଟଣା ପରେ ଦେଖାଗଲା ଯେ ଅକସ୍ମାତ ବାଞ୍ଛାନିଧି ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଛନ୍ତି । କିନ୍ତୁ ତାଙ୍କ ମନରେ ଆଉ ଉଚ୍ଚଶିକ୍ଷା ଲାଭ ଲାଗି ଆବେଗମୟ ଅଭିଳାଷ ନଥିଲା ।

ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କରୁଥିଲାବେଳେ ସେ ଭାବିଥିଲେ ଯେ ସେକାଳର ସର୍ବୋଚ୍ଚ ଶିକ୍ଷା ଏମ. ଏ ପାଶ୍ କରିସାରିଲା ପରେ ସେ ଆସି ବନବିଦ୍ୟାଳୟରେ ଆଜୀବନ ଶିକ୍ଷକତା କରିବେ । ଜୀବନର ଆଉ ଏକ ପର୍ଯ୍ୟାୟରେ ସେ ଭାବିଥିଲେ ଯେ ସର୍ବୋଚ୍ଚ ଶିକ୍ଷାଲାଭ କରି ସେ ତାଙ୍କ ପ୍ରଣୟିନୀଙ୍କର ପତି ପଦକୁ ଯୋଗ୍ୟ ହୋଇପାରିବେ । ଏ ଦୁଇଟି ଯାକ ଭାବନା ପରସ୍ପର ବିରୋଧୀ ନଥିଲା । ସୌଭାଗ୍ୟର ଇଙ୍ଗିତ ପାଇଥିଲେ ହୁଏତ ଏହି ଦୁଇଟିଯାକ ଭାବନା ଯୁଗପତ୍ ଚରିତାର୍ଥ

ହୋଇ ପାରିଥାନ୍ତା । କିନ୍ତୁ ତାହା ହେଲା ନାହିଁ କି ହେବାର ଆଉ ଆବଶ୍ୟକତା ରହିଲା ନାହିଁ । ୧୯୨୭ ମସିହା ବେଳକୁ ଆଉ ସେ ସତ୍ୟବାଦୀ ବିଦ୍ୟାଳୟ ନଥିଲା । ପୋଷିତ ଆଦର୍ଶର ବିପର୍ଯ୍ୟୟ ଦେଖି ଉତ୍କଳମଣି ତାକୁ ନିଜ ହାତରେ ଭାଙ୍ଗି ଦେଇଥିଲେ । ଠିକ୍ ସେହିପରି ୧୯୨୭ ମସିହା ବେଳକୁ ବିଚ୍ଛନ୍ଦଚରଣ ତାଙ୍କ ପ୍ରଣୟିନୀଙ୍କ ଠାରେ ପ୍ରଣୟ ପ୍ରାର୍ଥନା କରିବାକୁ ଆଉ ଅବକାଶ ନଥିଲା । ଘଟଣାଚକ୍ରରେ ତାଙ୍କ ପ୍ରଣୟିନୀ ବିବାହିତା ହୋଇସାରିଥିଲେ ଏବଂ ଦୈବର ବିଚିତ୍ର ବିଧାନରେ ବିବାହର ଏକବର୍ଷ ମଧ୍ୟରେ ପୁତ୍ର ସନ୍ତାନଟିର ଜନନୀ ହୋଇ ସେ ଇହଲୀଳା ସାଙ୍ଗ କରିଥିଲେ । ଏହିଠାରୁ ବିଚ୍ଛନ୍ଦଚରଣଙ୍କ ଜୀବନରେ ପଟ୍ଟପରିବର୍ତ୍ତନ ଘଟି ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା ।

ଦୀର୍ଘ ଚଉଦବର୍ଷ ପରେ ୧୯୪୧ ମସିହାରେ ବିଚ୍ଛନ୍ଦଚରଣ ବି. ଏଲ୍ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲେ । ସେହିଦିନଠାରୁ ସେ ନିଜ ନାମ ସହିତ ଉପାଧିଯୁକ୍ତ କରି ଲେଖୁଥିଲେ, ବିଚ୍ଛନ୍ଦଚରଣ ପଟ୍ଟନାୟକ ବି. ଏ. (ଅନର୍ସ) ବି. ଏଲ୍ ।



# ୪

# ପ୍ରସ୍ତୁତି ପର୍ବ

୧୯୨୮ ମସିହା ସ୍ୱଚ୍ଛନ୍ଦଚରଣଙ୍କ ଜୀବନରେ ଏକ ନୂତନ ମୋଡ଼ ସୃଷ୍ଟି କଲା । ପ୍ରେମ ଜନିତ ଚରମ ବିଫଳତା ତାଙ୍କୁ ଆଉ ଘାରିଲା ନାହିଁ । ବ୍ୟର୍ଥ ପ୍ରେମିକର ହାହାକାର ନଦୀକୁ ସେ ନବ ଜାଗ୍ରତ ମନବଳରେ ପହଁରି ପାରି ହୋଇଗଲେ । ସେ ଅନୁଭବ କଲେ ଯେ କେଉଁ ଏକ ଅଦୃଶ୍ୟ ମହାଶକ୍ତି ତାଙ୍କ ପ୍ରାଣରକ୍ଷା କରିଛି, ତା ନ ହୋଇଥିଲେ ନିଶ୍ଚିତ ମରଣ-କୂପ ଗର୍ଭରୁ ଅକ୍ଷତ ଅବସ୍ଥାରେ ସେ ଉଧୁରି ଯାଇଥାନ୍ତେ କିପରି ? ଯାହାର ଠିଆ ହେବାକୁ ବଳ ନାହିଁ, ସେ ପୁଣି କୋଡ଼ିଏ ଫୁଟ ଗଭୀର କୂପ ମଧ୍ୟରେ ପଇଁଚାଳିଶ ମିନିଟ୍ କାଳ ଠିଆ ହୋଇ ରହିଲା କିପରି ? କିପରି ବା ତା'ର ସଲିଳ ସମାଧି ନ ହେଲା ! କିଏ ତାକୁ ଉଦ୍ଧରି ଧରିଲା ! ଏସବୁ ଅଦୃଶ୍ୟ ଶକ୍ତିର କରାମତି ନୁହେଁ ତ ଆଉ କଅଣ ! ପୁଣି କୂପଗର୍ଭରୁ ଉଦ୍ଧାର ପାଇବା କ୍ଷଣି ତାଙ୍କର ସକଳ ଅବସାଦ ସହିତ ଉନ୍ମାଦ ଅବସ୍ଥା ଅନ୍ତର୍ହିତ ହୋଇଗଲା । ଏଥିରୁ ସେ ବୁଝିଲେ ଯେ ତାଙ୍କ ଜୀବନର କୌଣସି ଏକ ମହାନ୍ ଲକ୍ଷ୍ୟ ଅଛି, ଯାହାକୁ ପୂରଣ କରିବା ପାଇଁ ତାଙ୍କୁ ଏକ ନୂତନ ଜୀବନ ଦାନ କରାଯାଇଛି । ସେ ଏବେ ନବ ଜୀବନ ଲାଭ କରିଛନ୍ତି, ପୁନର୍ଜନ୍ମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅତୀତର ନିର୍ମୋକରୁ ନିଜକୁ ସଂପୂର୍ଣ୍ଣ ମୁକ୍ତ କରି ସ୍ୱଚ୍ଛନ୍ଦଚରଣ ଭବିଷ୍ୟତକୁ ପାଦ ବଢ଼ାଇଲେ । ଜୀବନର ସ୍ତିମିତ ଦୀପଶିଖା ପ୍ରଖର ତେଜରେ ଜଳି ଉଠିଲା । ବଞ୍ଚିଲା ପରି ବଞ୍ଚିବାର ଆଗ୍ରହ ଘେନି ନିଜର ଅନ୍ନ-ସଂସ୍ଥାନ କରିବା ଲାଗି ସେ ମନ ବଳାଇଲେ । ଅବଶ୍ୟ ଏକଥା ସତ୍ୟ ଯେ ତାଙ୍କର ଗଭୀର ପ୍ରେମାନୁଭୂତି ଓ ପ୍ରଣୟ ତଲ୍ଲୀନତା ଅକ୍ଷୁଣ୍ଣ ଭାବରେ ସମଗ୍ର ଜୀବନ ଲାଗି କେବଳ ସ୍ମୃତି ସଂପଦ ହୋଇ ରହିଲା ନାହିଁ, ବରଂ ତାଙ୍କ କବି-ଜୀବନର ମୂଳଭୂତ ଉପାଦାନରେ ପରିଣତ ହୋଇଗଲା । ସେ ଲେଖିଛନ୍ତି, "ମୋର ଉପଲବ୍ଧି ହୋଇଅଛି ଯେ ମୋତେ କବି କରି ଗଢ଼ିବା ନିମନ୍ତେ ବିଧାତା ବହୁ ବିଚ୍ଛେଦରେ ମୋ ହୃଦୟକୁ ଜୀର୍ଣ୍ଣ କରି ଆସୁଅଛନ୍ତି ।"

ବଞ୍ଚିବାକୁ ହେଲେ ଭରଣପୋଷଣ ନିମନ୍ତେ ଶିକ୍ଷକତାକୁ ଜୀବିକା ଭାବରେ ଗ୍ରହଣ କରି ଖୋଜି । ଅନ୍ତଃପାତୀ ଓଲସିଂହ ଗଲେ ସ୍ୱଚ୍ଛନ୍ଦଚରଣ । ଓଲସିଂହ ଉଚ୍ଚ

ଇଂରାଜୀ ବିଦ୍ୟାଳୟର ସହକାରୀ ପ୍ରଧାନଶିକ୍ଷକ ଓ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ବର୍ଜନ କରି ସେ ଲକ୍ଷ୍ୟ କଲେ ଯେ ଶିକ୍ଷକତା ତାଙ୍କର ଏକ ସହଜାତ ପ୍ରବୃତ୍ତି । ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା କରିବାପାଇଁ ତାଙ୍କ ମନର ଗୋପନ କୋଣରେ ଯେଉଁ ଅଭିଳାଷ ସମାଧି ଲାଭ କରିଥିଲା, ତାହା ବିକାଶ ଲାଭ କଲା ଓଲସିଂହରେ । ସତ୍ୟବାଦୀ ଆଦର୍ଶକୁ ଓଲସିଂହ ପରିବେଶରେ ରୋପଣ କରିବାକୁ ପ୍ରୟାସୀ ହେଲେ ବିଚ୍ଛନ୍ଦଚରଣ । କିନ୍ତୁ ସେ ଜାଣି ନଥିଲେ ଯେ ସତ୍ୟବାଦୀରେ ସୁଦ୍ଧା ସେ ଆଦର୍ଶ ଠିକଣା ଭାବରେ ଚେର ଧରୁନାହିଁ । ସ୍ୱେଚ୍ଛାକୃତ ଦାରିଦ୍ର୍ୟ ବରଣ କରି ସର୍ବନିମ୍ନ ପ୍ରୟୋଜନ ଅନୁରୂପ ବସ୍ତୁ ସଂଗ୍ରହ କରି କିଏ ବା କାହିଁକି ଦେଶ ଓ ଜାତି ପାଇଁ ଉଚ୍ଚ ଚିନ୍ତା କରିବାକୁ ଯିବ ! କିଏ ବା କାହିଁକି ଗୃହଚର୍ଯ୍ୟାମୟ ସଂସାର ଜୀବନର ଦୁର୍ବାର ପ୍ରଲୋଭନକୁ ଏଡ଼ାଇ ଦେଇ ନିଜର ଶିକ୍ଷା, ସାମର୍ଥ୍ୟକୁ ପଲ୍ଲୀ ଅଭିମୁଖୀ କରାଇବ ? ଯଦି ଏ ଆଦର୍ଶ ସତ୍ୟବାଦୀ ପରିବେଶରେ ଦୀର୍ଘକାଳ ତିଷ୍ଠି ପାରିଲା ନାହିଁ, ଓଲସିଂହରେ ତାହା ଆଉ ତିଷ୍ଠିବା ସମ୍ଭାବନା ଥିଲା କି ? କିନ୍ତୁ ବିଚ୍ଛନ୍ଦଚରଣ ଏସବୁ ବିଚାରକୁ ନେବାକୁ ପ୍ରସ୍ତୁତ ନଥିଲେ । ଘାତ ପ୍ରତିଘାତରେ ବିବ୍ରତ ନହୋଇ ପ୍ରତିରୋଧ ଓ ପ୍ରତିବାଦ କରିବାକୁ ସେ ସଦା ଆଗଭର ହୋଇ ରହୁଥିଲେ ।

ବିଚ୍ଛନ୍ଦଚରଣ ଥିଲେ ଜଣେ ଅତ୍ୟନ୍ତ ଛାତ୍ରବତ୍ସଳ ଶିକ୍ଷକ । ଏକାଧାରରେ କଠୋରତା ଓ କୋମଳତା ତାଙ୍କୁ ଆଶ୍ରୟ କରିଥିଲା । ସତ୍ୟବାଦୀର ଅପାସୋରି ସ୍ମୃତିରୁ ପଣ୍ଡିତ ନୀଳକଣ୍ଠଙ୍କ କଠୋର ଶୃଙ୍ଖଳାବୋଧ, ଉତ୍କଳମଣି ଗୋପବନ୍ଧୁଙ୍କ କ୍ଷମାଶୀଳ ମହାନୁଭବତା, ଏବଂ ଆଚାର୍ଯ୍ୟ ହରିହରଙ୍କର ବିଗଳିତ କରୁଣା ମୂର୍ତ୍ତି ଅଦ୍ଭୁତ ବାତ୍ସଲ୍ୟ ତାଙ୍କ ଚରିତ୍ରରେ ରୂପାୟିତ ହେଉଥିଲା । ତେଣୁ ସେ ନିଜ ଚରିତ୍ରରେ କଠୋରତା ଓ କୋମଳତା ଜନିତ ଦ୍ୱନ୍ଦ୍ୱ ଅନୁଭବ କରୁଥିଲେ । କିନ୍ତୁ ସେ ଦ୍ୱନ୍ଦ୍ୱକୁ ଅତିକ୍ରମ କରିଯିବା ପାଇଁ ତାଙ୍କର ଦୃଢ଼ ମନୋବଳ ମଧ୍ୟ ଥିଲା । ସେ କହୁଥିଲେ, ଯେଉଁମାନେ ଲୋକୋତ୍ତର ଚରିତ୍ରର ଅଧିକାରୀ, ସେମାନଙ୍କ ପକ୍ଷରେ ଏକାଧାରରେ ବଜ୍ରପରି କଠୋର ଓ ପୁଷ୍ପପରି କୋମଳ ହେବା ସମ୍ଭବ ।

ଛାତ୍ରମାନଙ୍କ ପ୍ରତି ସେ ଯେଉଁ ମାତ୍ରାରେ ସହାନୁଭୂତିଶୀଳ ଥିଲେ, ଛାତ୍ରମାନେ ତାଙ୍କ ପ୍ରତି ତା ଠାରୁ ଅଧିକ ମାତ୍ରାରେ ଭକ୍ତି ଓ ଅନୁରକ୍ତି ପ୍ରକାଶ କରୁଥିଲେ । ଯେକୌଣସି ଶିକ୍ଷକ ପକ୍ଷରେ ଏହା ଏକ ଗର୍ବର ବିଷୟ । ଏହି ଛାତ୍ରମାନେ ଓଡ଼ିଶା ଐତିହ୍ୟର ଧାରକ ହେବେ, ଏହା ଚିନ୍ତା କରି ସେ ଆପାତ-ଅକ୍ଷମ ଛାତ୍ରମାନଙ୍କଠାରେ ବିପୁଳ ସମ୍ଭାବନାର ସନ୍ଧାନ ପାଉଥିଲେ । ଦେଶର ସ୍ୱାଧୀନତା ସଂଗ୍ରାମରେ "ବାନର

ବାହୁନୀ'' ଯେଉଁ ଅପୂର୍ବ କାର୍ଯ୍ୟଦକ୍ଷତାର କୌଶଳ ପ୍ରଦର୍ଶନ କରିଥିଲେ ତାହା ସ୍ମରଣରେ ରଖି ଓଡ଼ିଆ ଜାତିର ସାଂସ୍କୃତିକ ପୁନର୍ଜାଗରଣ କାର୍ଯ୍ୟକ୍ରମକୁ ସଫଳ କରିବାକୁ ହେଲେ ଏହି ଅଳ୍ପବୟସ୍କ ଛାତ୍ରମାନଙ୍କୁ ଯେପରି "ବାନର ବାହୁନୀ" ଗଢ଼ିବାର ସ୍ୱପ୍ନ ସେ ଦେଖୁଥିଲେ । ଓଲସିଂହରେ ଥିଲାବେଳେ ମଧ୍ୟ ତାଙ୍କର ଏ ସ୍ୱପ୍ନ ଅନେକ ଅଂଶରେ ସଫଳତା ଲାଭ କରିଥିଲା ।

ଓଲସିଂହ ହାଇସ୍କୁଲ ବିଦ୍ୟାଳୟର ତତ୍କାଳୀନ ଛାତ୍ର କବି କୃଷ୍ଣଚନ୍ଦ୍ର ତ୍ରିପାଠୀ (ବାଣପୁର) ଲେଖିଛନ୍ତି, "ଏ ଲେଖକ ଛାତ୍ର ଥିବାବେଳେ ସ୍ୱଚ୍ଛନ୍ଦ ବାବୁ ସେଠାକୁ ଶିକ୍ଷକ ହୋଇ ଆସିଥିଲେ ଏବଂ ଛାତ୍ରାବାସର ଗୋଟିଏ ପ୍ରକୋଷ୍ଠ ଗୃହରେ ରହୁଥିଲେ । ସେଠାରେ ସ୍ୱଚ୍ଛନ୍ଦବାବୁ ପ୍ରାଚୀନ କବିମାନଙ୍କର କାବ୍ୟ ଆଲୋଚନା କରନ୍ତି ଏବଂ ଛାତ୍ର-ସମାଜକୁ ପ୍ରାଚୀନ ସାହିତ୍ୟର ଭାବଧାରାରେ ଅନୁପ୍ରାଣିତ କରନ୍ତି । ବହୁ ବିସ୍ମୃତ ପ୍ରାଚୀନ କବିମାନଙ୍କର ଲେଖା ମଧ୍ୟ ସଂଗ୍ରହ କରି ଛାତ୍ରମାନଙ୍କ ଦ୍ୱାରା ତାଳପତ୍ର ପୋଥିରୁ କାଗଜରେ ଉତାରନ୍ତି । ବହୁ ସମୟ ପ୍ରାଚୀନ କବିମାନଙ୍କ ଲେଖାର ଉତ୍କୃଷ୍ଟତମ ଅଂଶ ଛାତ୍ରମାନଙ୍କୁ ପଢ଼ି ଶୁଣାନ୍ତି" ।

ଜାତୀୟ ସଂସ୍କୃତିର ପୁନର୍ଜାଗରଣ ପ୍ରଚେଷ୍ଟାର ପ୍ରଥମ ପଦକ୍ଷେପ ରୂପେ ସେ ଓଡ଼ିଶାର ପ୍ରାଚୀନ ସାହିତ୍ୟର ଉଦ୍ଧାରକୁ ଅଗ୍ରାଧିକାର ଦେଇଥିଲେ । ସେ ଲକ୍ଷ୍ୟ କରିଥିଲେ ଯେ ପ୍ରାଚୀନ ତାଳପତ୍ର ପୋଥି ସଂଗ୍ରହ କରିବାକୁ ହେଲେ ଏହି ଛାତ୍ରମାନଙ୍କ ଦ୍ୱାରା ସେ କାର୍ଯ୍ୟ ଅନାୟାସରେ କରିହେବ । ପ୍ରାଚୀନ ତାଳପତ୍ର ପୋଥି ସବୁ ଅଶେଷ ଜ୍ଞାନ ବିଜ୍ଞାନର ଭଣ୍ଡାର । କିନ୍ତୁ ସେଗୁଡ଼ିକ ଅବହେଳିତ ଅବସ୍ଥାରେ ଓଡ଼ିଶାର ପୁରପଲ୍ଲୀରେ ପଡ଼ି ରହିଛି । ନଈବଢ଼ି, ଘରପୋଡ଼ି ଓ ଉଈଙ୍କ ଦାଉରୁ ସେମାନଙ୍କୁ ଉଦ୍ଧାର ନକଲେ ଆସ୍ତେ ଆସ୍ତେ ସେହି ଅମୂଲ୍ୟ ସମ୍ପଦମାନ ଲୋକଲୋଚନର ଅଗୋଚରକୁ ଚାଲିଯିବ । ପୋଥିମାନଙ୍କୁ ଠିକଣା ସମୟରେ ନ ଉତାରିଲେ ଜୀର୍ଣ୍ଣ ପୋଥିମାନଙ୍କର ଆଉ ପ୍ରୟୋଜନୀୟତା ରହିବ ନାହିଁ । ଜୀର୍ଣ୍ଣଦଶା ପୋଥିଗୁଡ଼ିକ ବିଲୁପ୍ତ ହେବା ପୂର୍ବରୁ ତାହାକୁ ନିର୍ଭୁଲ ଭାବରେ ଉତାରି ସଫାକରି ରଖିବାକୁ ହେବ । କେତେ ଯେ ମୂଲ୍ୟବାନ ପୋଥି ଅବହେଳାର ପାତ୍ର ହୋଇ ବିସ୍ମୃତି ଗର୍ଭରେ ଲୀନ ହୋଇ ଗଲେଣି ତାହା କିଏ କହିବ ? ଧୃତଧନ ପ୍ରାଚୀନ ପୋଥିମାନଙ୍କର ବିଲୟ ଘଟୁଅଛି । ତେଣୁ ସାମରିକ ତତ୍ପରତା ସହିତ ସେମାନଙ୍କ ଉଦ୍ଧାର କାର୍ଯ୍ୟ ଚାଲୁ ରଖିବାକୁ ହେବ ।

ବ୍ରିଟିଶମାନଙ୍କ ଆଗମନ ହେତୁ ଇଂରାଜୀ ଢାଞ୍ଚା ଶିକ୍ଷାର ପ୍ରବର୍ତ୍ତନ ଫଳରେ ଓ ଛାପା ପୁସ୍ତକମାନଙ୍କ ମର୍ଯ୍ୟାଦା ବୃଦ୍ଧି କାରଣରୁ ହାତଲେଖା ତାଳପତ୍ର ପୋଥିମାନେ

ଅଧିକରୁ ଅଧିକ ଅବହେଳା ଭୋଗିବାକୁ ଆରମ୍ଭ କରିଥିଲେ । ଶିକ୍ଷିତ ସମାଜ ଆଉ ତାଳପତ୍ର ପୋଥି ଲେଖୁ ନଥିଲେ, ଉଦ୍ଧାରୁ ନଥିଲେ ଏବଂ ପଢୁ ମଧ୍ୟ ନଥିଲେ । ଏହି ପୋଥିମାନେ ଜ୍ଞାନର ଝରଣୀ ହୋଇ ମଧ୍ୟ ଉପେକ୍ଷିତ ଅବସ୍ଥାରେ ଗାଁ ଗହଳର ଭାଗବତ ଗାଦିମାନଙ୍କରେ ପୂଜାସାମଗ୍ରୀ ରୂପେ ସ୍ଥାନ ପାଇଥିଲା ଓ ଅବୈଜ୍ଞାନିକ ଢଙ୍ଗରେ ସେମାନଙ୍କ ରକ୍ଷଣାବେକ୍ଷଣ ସେମାନଙ୍କ ବିଲୁପ୍ତିର କାରଣ ହୋଇଥିଲା । ଫୁଲଚନ୍ଦନ ପକାଇ ଭକ୍ତି ସହରେ ପୋଥିମାନଙ୍କୁ ପୂଜା କରିବା ବ୍ୟବସ୍ଥାଠାରୁ ବଳି ଆଉ କଅଣ ବା ଜାତୀୟ ସାରସ୍ୱତ ଭଣ୍ଡାରର ଅବକ୍ଷୟ ଲାଗି ଦାୟୀ ହୋଇ ପାରିଥାନ୍ତା ! ଅନ୍ଧ କୁସଂସ୍କାରର ବଶବର୍ତ୍ତୀ ହୋଇ ଏହି ପୋଥିମାନଙ୍କୁ କାହାରିକୁ ଛୁଅାଇଁ ନଦେବା ଲାଗି ଗୃହକର୍ତ୍ତାମାନେ ଯେଉଁ ଅକ୍ଷମଣୀୟ ମନୋବୃତ୍ତି ପୋଷଣ କରୁଥିଲେ, ସେଥିରେ ପୋଥି ଉଦ୍ଧାର କାର୍ଯ୍ୟ ସଫଳ ହେବା ସୁଦୂର ପରାହତ ହୋଇଥିଲା । ଏପରିକି ସମ୍ପୂର୍ଣ୍ଣ ଜୀର୍ଣ୍ଣଦେଶସ୍ଥ ପୋଥିମାନଙ୍କୁ ସୁଦ୍ଧା କାହାରିକୁ ଦେଖାଇବା ପାଇଁ ସେମାନେ ପ୍ରସ୍ତୁତ ନଥିଲେ । ଆଉ କାହାକୁ ପୋଥି ଦେଖାଇଲେ ତାଙ୍କ କୁଳର ଅମଙ୍ଗଳ ହେବ, ଏହି ଧାରଣା ପୁରୁଷ ନାରୀ ନିର୍ବିଶେଷରେ ବଦ୍ଧମୂଳ ହୋଇ ଯାଇଥିଲା । ଅବଶ୍ୟ ଏହା ସ୍ୱୀକାର କରିବାକୁ ହେବ ଯେ ଜାତିର ଘୋର ଦୁର୍ଦ୍ଦିନରେ ପୋଥି ଅପହରଣକାରୀମାନଙ୍କ ଅବାଂଛିତ ଉଦ୍ୟମକୁ ପଣ୍ଡ କରିଦେବା ପାଇଁ ଓ ପୋଥିମାନଙ୍କର ସୁରକ୍ଷାଲାଗି କରାଯାଇଥିବା ବ୍ୟବସ୍ଥାରୁ ଏହି ରକ୍ଷଣଶୀଳ ମନୋବୃତ୍ତିର ଉଦ୍‌ଭବ ହୋଇଅଛି । କିନ୍ତୁ ସୀମାତୀତ ଭାବରେ ଏହି ରକ୍ଷଣଶୀଳତାର ଲୌହ ବଳୟ ସୁଦୃଢ଼ ହେବା ହେତୁରୁ ତାହା ପୋଥିମାନଙ୍କ ବିଲୁପ୍ତିର କାରଣ ହୋଇଗଲା ।

ପୋଥିମାନଙ୍କ ପାଖରେ ପହଞ୍ଚିବା ଘର ପିଲାଙ୍କ ପକ୍ଷେ ଯେତେ ସହଜ, ବାହାର ବ୍ୟକ୍ତିମାନଙ୍କ ପକ୍ଷରେ ତେତେ ସହଜ ନଥିଲା । ବିଶେଷକରି ଯଦି ଏହି ପିଲାମାନେ ଜାତୀୟ ସଂସ୍କୃତି ଓ ସାହିତ୍ୟର ଉଦ୍ଧାର କଳ୍ପେ ଉଦ୍‌ବୁଦ୍ଧ "ବାନର ବାହିନୀ"ର କାର୍ଯ୍ୟ କରନ୍ତି, ତେବେ ପୋଥି ଉଦ୍ଧାର ଅପେକ୍ଷାକୃତ ସହଜ ହୋଇ ପାରିବ, ଏହା ସ୍ୱଚ୍ଛନ୍ଦଚରଣ ଅନୁଭବ କଲେ । ନିଜ ଛାତ୍ରମାନଙ୍କଠାରେ ଜାତୀୟ ଭାବନା, ସଂସ୍କୃତିପ୍ରୀତି ଓ ଜାତୀୟ ସଂସ୍କୃତିର ପୁନରୁଦ୍ଧାର କଳ୍ପେ ତ୍ୟାଗବ୍ରତର ସଂକଳ୍ପ ଜାଗ୍ରତ କରାଇବାକୁ ସେ ଯେଉଁ ଉଦ୍ୟମ କରିଥିଲେ, ତାହା ସଫଳ ହେଲା । ଅପୂର୍ବ ଉତ୍ସାହରେ ଛାତ୍ରମାନେ ନିଜର ଓ ପଡ଼ୋଶୀ ଘରୁ ପୋଥିସଂଗ୍ରହ କରି ଆଣି ଜମା ଦେଉଥିଲେ । ବନ୍ଧୁ ବାନ୍ଧବ ଘର ଗଲେ ସେମାନେ ସ୍ୱଚ୍ଛନ୍ଦଚରଣଙ୍କ ବାଣୀ ତାଙ୍କୁ ଶୁଣାଉଥିଲେ ଓ ଅବହେଳିତ ପୋଥିମାନଙ୍କୁ ସୂର୍ଯ୍ୟାଲୋକକୁ ଆଣିବା ପାଇଁ ଜନମତ ସୃଷ୍ଟି କରାଉଥିଲେ । ଖୋର୍ଦ୍ଧାର ଓଲସିଂହ ଅଞ୍ଚଳ ପ୍ରାଚୀନ ସରୁଆ ଲୋକମାନଙ୍କର

ଆବାସ ସ୍ଥଳ ହୋଇଥିବାରୁ ଭାଗବତ ଗାଦିମାନଙ୍କରେ, ମନ୍ଦିରର ପେଡ଼ି ପୋଟଳରେ ପୋଥିମାନଙ୍କର ଅଭାବ ନଥିଲା । ସାହିତ୍ୟ, ଗଣିତ, ଜ୍ୟୋତିଷ ଆଦି ଅନେକ ବିଷୟକ ପୋଥି ମଧ୍ୟରୁ ସାହିତ୍ୟ ବିଷୟକ ପୋଥିକୁ ପ୍ରାଧାନ୍ୟ ଦେଇ ସଂଗ୍ରହ କାର୍ଯ୍ୟ ଚାଲିଥିଲା । ଆଞ୍ଚଳିକ ଲୋକମାନଙ୍କ ସହଯୋଗ, ଛାତ୍ରମାନଙ୍କ ନିରଳସ ଉଦ୍ୟମ ଫଳରେ ବିଚ୍ଛନ୍ଦଚରଣ ଏକସ୍ଥାନରେ ବସି ଅନେକ ପୋଥି ସଂଗ୍ରହ କରାଇ ପାରିଲେ । ସେ ଲେଖିଛନ୍ତି - "ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ, ଦନେଇ ଦାସଙ୍କ ୩୬ ଛାନ୍ଦ ବିଶିଷ୍ଟ ବୃହତ୍ ଗୋପୀଭାଷା, ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଓଡ଼ିଆ ଭାଗବତ, କାର୍ତ୍ତିକ ଦାସଙ୍କ ରୁକ୍ମୁଣୀ ବିଭା, ଅର୍ଜ୍ଜୁନ ଦାସଙ୍କ ରାମ ବିଭା, ଦୀନକୃଷ୍ଣ ଦାସଙ୍କ ଜଗମୋହନ ଛାନ୍ଦ, ଚଉତିଶା ମଧୁସ୍ଵର ଚଉତିଶା ସମ୍ଭାର ଆଦି ଓଡ଼ିଆ ସାହିତ୍ୟର ବହୁ ମହାର୍ଘ ସମ୍ଭାର ପ୍ରଥମେ ସେ ଅଞ୍ଚଳରୁ ମୋର ଅନୁରକ୍ତ ଛାତ୍ରମାନଙ୍କ ଦ୍ଵାରା ସଂଗୃହୀତ ହୋଇ ପରେ ଯଥା କାଳରେ ପ୍ରାଚୀ ସମିତି ଦ୍ଵାରା ପ୍ରକାଶିତ ହୋଇଥିଲା ।"

ପୋଥି ଉଦ୍ଧାରର ପ୍ରେରଣା ଓ ନିର୍ଦ୍ଦେଶ ସେ ପାଇଥିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଠାରୁ । ରେଭେନ୍ସା ମହାବିଦ୍ୟାଳୟ ପୂର୍ବ ଛାତ୍ରାବାସର ସୁପରିନ୍ଟେଣ୍ଡେଣ୍ଟ ଭାବରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ତାଙ୍କର ଛାତ୍ରମାନଙ୍କ ମଧ୍ୟରେ ପୋଥି ଉଦ୍ଧାର କାର୍ଯ୍ୟ ଲାଗି ଉତ୍ସାହ ସୃଷ୍ଟି କରୁଥିଲେ । ବିଚ୍ଛନ୍ଦଚରଣ ଯେତେବେଳେ ଓଲସିଂହ ଗଲେ, ପୋଥି ସଂଗ୍ରହ ଲାଗି ସେ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଠାରେ ବଚନବଦ୍ଧ ହୋଇ ଯାଇଥିଲେ । ପୋଥି ସଂଗ୍ରହ କାର୍ଯ୍ୟରେ ବିଚ୍ଛନ୍ଦଚରଣଙ୍କ ଆଶାତୀତ ସଫଳତା ଦେଖି ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ବିସ୍ମୟର ସୀମା ରହିଲା ନାହିଁ । ଚଳନ୍ତ୍ରଶକ୍ତି ବିହୀନ ଜଣେ ବ୍ୟକ୍ତି ନିଜର ମାନସିକ ବଳ ଓ ସାଂଗଠନିକ ଶକ୍ତି ହେତୁ କିପରି ଅସାଧ୍ୟ ସାଧନ କରିପାରେ ବିଚ୍ଛନ୍ଦଚରଣ ତାହାର ଉଜ୍ଜ୍ଵଳ ଦୃଷ୍ଟାନ୍ତ ରୂପେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ବିଚ୍ଛନ୍ଦଚରଣଙ୍କ ନିଜସ୍ଵ ପ୍ରତିଭା ଅନନ୍ୟ ସାଧାରଣ ଭାଷା ଜ୍ଞାନ ଢଙ୍ଗକୁ ତାଙ୍କର "ସଗ୍ରାମୀ" ମନୋବୃତ୍ତି ବା ନିର୍ଦ୍ଦ୍ଵନ୍ଦା ଭାବ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କୁ ଅଭିଭୂତ କରିଥିଲା । କିନ୍ତୁ ତାଙ୍କ ମଧ୍ୟରେ ଯେ ଏତେ ସାଙ୍ଗଠନିକ ଶକ୍ତି ନିହିତ ଥିଲା ତାହା ପୋଥି ସଂଗ୍ରହ ପୂର୍ବରୁ ଅଧ୍ୟାପକ ମହାନ୍ତିଙ୍କୁ ଅବଗତ ନ ଥିଲା । ଅଧ୍ୟାପକ ମହାନ୍ତି ନିଜ ପରିକଳ୍ପିତ ସାଂସ୍କୃତିକ ଜାଗରଣ ଲାଗି ଉଦ୍ଦିଷ୍ଟ ଅନୁଷ୍ଠାନର ପରିଚାଳକ ଭାବରେ ବିଚ୍ଛନ୍ଦଚରଣଙ୍କୁ ମନେ ମନେ ବାଛି ସାରିଥିଲେ । ଯେଉଁଦିନ ପିତା ଗୋଲକକୃଷ୍ଣ ପଟ୍ଟନାୟକ ଅଧ୍ୟୟନ ଅଭିଳାଷୀ ପୁତ୍ରକୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ପାଖରେ ସମର୍ପି ଦେଇଗଲେ, ସେହିଦିନରୁ ଅଧ୍ୟାପକ ମହାନ୍ତି ବୋଧ କରୁଥିଲେ ଯେ ଅସାଧାରଣ ଶକ୍ତିର ଆଧାର ଶିଷ୍ୟଟିଏ ସେ ପାଇଛନ୍ତି । ସେହି ଶିଷ୍ୟର ପ୍ରତିଭା ଚନ୍ଦ୍ରକଳା ପରି ଦିନକୁ ଦିନ ବିକଶିତ ହେବାକୁ ଲାଗିଲା । କିନ୍ତୁ ଏହା ମଧ୍ୟ ସେ ଲକ୍ଷ୍ୟ କରିଥିଲେ ଯେ ଏହି ଉପାଧିମାନ ସେମାନଙ୍କୁ ପ୍ରତିଷ୍ଠାଦି ଦେବାରେ ଲାଗି ରହିଥିଲା ।

ପ୍ରଶସ୍ୟଜନକ ବିପର୍ଯ୍ୟୟରୁ ବିଚ୍ଛନ୍ଦଚରଣଙ୍କ ଉଚ୍ଚାକାଂକ୍ଷା ଯେପରି ବ୍ୟାହତ ହେଲା, ନିଜର ଅନମନୀୟ ଆଦର୍ଶବାଦୀ ଆଚରଣରୁ ଓଲସିଂହରେ ଶିକ୍ଷକତା ମଧ୍ୟ ସେପରି ବିପନ୍ନ ହେଲା । ବିପଦ ବରଣ କଲେ ବିଚ୍ଛନ୍ଦଚରଣ ବିମର୍ଷ ହୋଇ ପଡ଼ୁ ନଥିଲେ, ବରଂ ନିଜ ସ୍ନାୟୁ ମଣ୍ଡଳରେ ରଣଭୂମିର ଅପୂର୍ବ ଉଷ୍ମା ଓ ଉତ୍ତେଜନା ଅନୁଭବ କରି ଉଲ୍ଲସିତ ହେଉଥିଲେ । ବିପଦର ସମ୍ମୁଖୀନ ହୋଇ ଲଢ଼ିବା ତାଙ୍କ ପାଇଁ ଏକ ସୁଖମୟ ଅନୁଭୂତି ଥିଲା । "ଲୁଭଲଭୈ ଜୟାକାଂକ୍ଷୈ" ପ୍ରତି ଭ୍ରୂକ୍ଷେପ ନରଖି ସେ ପ୍ରତ୍ୟେକ ରଣାହ୍ୱାନର ପ୍ରତି-ହୁଁକାର ଦେଉଥିଲେ ।

ବିଚ୍ଛନ୍ଦଚରଣ ଉତ୍ତମ ରୂପେ ବୁଝିଥିଲେ ଯେ ଓଲସିଂହରେ ଶିକ୍ଷକତା ଛଡ଼ିବା ବିନା ତାଙ୍କ ଅନ୍ନ-ସଂସ୍ଥାନ ଲାଗି ବିକଳ୍ପ ବ୍ୟବସ୍ଥା ନାହିଁ । ତଥାପି ବିଦ୍ୟାଳୟର ପଦାଧିକାରୀ ବ୍ୟକ୍ତିମାନଙ୍କ ସହିତ ଆଦର୍ଶଗତ ବିରୋଧ ବିଷୟରେ ସେ ସାଲିଶ କରିବାକୁ ପ୍ରସ୍ତୁତ ନ ଥିଲେ । ତାଙ୍କର ବହୁ ଯଶ, ଅପଯଶ ତଥା ସୁନାମ, ଦୁର୍ନାମର କାରଣ ହେଉଛି ତାଙ୍କ ଅନମନୀୟତା । ସମୁଦ୍ର ଲହଡ଼ି ଦେଖି ନଇଁ ଯିବା କିମ୍ବା ବର୍ଷା ଦେଖି ଛତା ଧରିବା ତାଙ୍କ ପ୍ରକୃତିଗତ ବ୍ୟାପାର ନଥିଲା । ଥରେ ଧନୁରୁ ଛୁଟିଲେ ସେ ତୀର ପରି ସିଧା ସଲକ୍ଷ ଆଘାତ କରୁଥିଲେ ।

ଦେଢ଼ ବର୍ଷ କାଳ ଶିକ୍ଷକତା କରି ମାତ୍ର ପରିଶେଷରେ ଅନେକ ଝଡ଼ଝଞ୍ଜା ପରେ ସେ ଓଲସିଂହ ଛାଡ଼ିଲା ବେଳେ ମନେ କରୁଥିଲେ ଯେ ଜୀବନରେ ସେହି ଅଦୃଶ୍ୟ ମହାଶକ୍ତିର ଇଚ୍ଛା ପୂରଣ ହେଉଅଛି, ଯେଉଁ ଅଦୃଶ୍ୟ ମହାଶକ୍ତି ହିଁ ତାଙ୍କ ଜୀବନର ଚାଳକ ଓ ନିୟାମକ ।



## ୫

# ପ୍ରାଚୀ ସମିତି

ଓଡ଼ିଆ ପ୍ରାଚୀନ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅଧ୍ୟକ୍ଷତାରେ କଟକରେ ପ୍ରାଚୀ ସମିତି ପ୍ରତିଷ୍ଠିତ ହେଲା ଓ ଉଲସିଂହରୁ ଫେରି ବଞ୍ଛାନିଧିଚରଣ ତାହାର ସମ୍ପାଦକ ପଦ ବରଣ କଲେ । ପ୍ରାଚୀ ସମିତିର ଇଂରାଜୀ ମୁଖପତ୍ର 'ପ୍ରାଚୀ'ର ସମ୍ପାଦନା ଦାୟିତ୍ୱ ମଧ୍ୟ ତାଙ୍କଠାରେ ନ୍ୟସ୍ତ ହେଲା । ଅଧ୍ୟାପକ ଆର୍ତ୍ତବଲ୍ଲଭ ଲକ୍ଷ୍ୟ କରିଥିଲେ ଯେ ଏହି ଦୁଇ ଗୁରୁ ଦାୟିତ୍ୱକୁ ତୁଲାଇବା ପାଇଁ ତାଙ୍କ ପ୍ରିୟ ଶିଷ୍ୟ ବଞ୍ଛାନିଧିଚରଣଙ୍କ ଠାରେ ସକଳ ଯୋଗ୍ୟତା ପୂର୍ଣ୍ଣମାତ୍ରାରେ ନିହିତ ଅଛି । ଅଧ୍ୟୟନ, ଅଧ୍ୟବସାୟ, କର୍ମନିଷ୍ଠା, ଦେଶପ୍ରୀତି, ସ୍ୱାଧୀନ ଚିନ୍ତାଧାରା, ସାହିତ୍ୟିକ କର୍ମରେ ଅଭିରୁଚି ଓ ଦକ୍ଷତା ତଥା ନିଃସ୍ୱାର୍ଥପର ଦେଶସେବା ଲାଗି ତତ୍ପରତା ଆଦି ସଦ୍‌ଗୁଣ ବଞ୍ଛାନିଧିଚରଣଙ୍କୁ ମଣ୍ଡିତ କରିଥିଲା । ଦୋଷ ଭିତରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ଏତିକି ଜାଣିଥିଲେ ଯେ ବଞ୍ଛାନିଧିଚରଣ ଜଣେ ଅସ୍ୱାଭାବିକ ଭାବରେ ଭାବପ୍ରବଣ ବ୍ୟକ୍ତି । ଭାବପ୍ରବଣତାର ବଶବର୍ତ୍ତୀ ହୋଇ ବେଳେବେଳେ ସେ ଭାରସାମ୍ୟ ହରାଇ ବସନ୍ତି । କିନ୍ତୁ ଅନ୍ୟ ପକ୍ଷରେ ଏହି ଭାବପ୍ରବଣତା ହିଁ ତାଙ୍କର ପ୍ରଚଣ୍ଡ କର୍ମଶକ୍ତିର ମୂଳ ଉତ୍ସ ଥିଲା । ନବ ପ୍ରତିଷ୍ଠିତ ପ୍ରାଚୀ ସମିତିକୁ ଦକ୍ଷତାର ସହିତ ଚଳାଇବା ପାଇଁ ବଞ୍ଛାନିଧିଚରଣଙ୍କ ସାମର୍ଥ୍ୟ ବିଷୟରେ କାହାରି ଦ୍ୱିଧା ନଥିଲା ।

ପ୍ରାଚୀ ସମିତିର ଅନ୍ୟତମ ପ୍ରମୁଖ ସଭ୍ୟ ଥିଲେ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ । ପରବର୍ତ୍ତୀ ସମୟରେ ଉତ୍କଳ ସଙ୍ଗୀତ ସମାଜ ସେ ପ୍ରତିଷ୍ଠା କରିଥିଲେ । ପ୍ରାଚୀ ସମିତିର ବରିଷ୍ଠ ପୃଷ୍ଠପୋଷକ ଭାସ୍କର ଚନ୍ଦ୍ର ଭୂୟାଁଙ୍କର ସେ ଥିଲେ ଶାଳକ ଓ ବଞ୍ଛାନିଧିଚରଣଙ୍କର ଏକାନ୍ତ ଅନ୍ତରଙ୍ଗ ବନ୍ଧୁ । "କାନ୍ତ ସ୍ମୃତି ଶାଳୀ" ଲକ୍ଷ୍ମୀକାନ୍ତଙ୍କ ପ୍ରୟାଣରେ ବଞ୍ଛାନିଧିଚରଣ ଲେଖିଥିଲେ, "ହୃଦି ପଞ୍ଜରୁ ମୋ ଦକ୍ଷ କର, ଭଗ୍ନ ହେଲା ନିର୍ଭର ଘର" । ଭାସ୍କର ଚନ୍ଦ୍ର ଭୂୟାଁଙ୍କ ବିଶେଷ ଅନୁଦାନ ଦ୍ୱାରା ପ୍ରାଚୀ ସମିତି ଆର୍ଥିକ ଚିନ୍ତାରୁ ମୁକ୍ତ ଥିଲା ଓ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ "ପ୍ରାଚୀ" ପତ୍ରିକା ପ୍ରକାଶ କରିବାକୁ କ୍ଷମ ହୋଇଥିଲା ।

ପ୍ରାଚୀ ସମିତିର ଆଭିମୁଖ୍ୟ ଥିଲା, ଓଡ଼ିଶାର ପୂର ପଲ୍ଲୀରୁ ନଷ୍ଟାୟମାନ ତାଳପତ୍ର ପୋଥିମାନଙ୍କର ଉଦ୍ଧାର କରି ସେମାନଙ୍କର ସଂଶୋଧିତ ପାଠ ସହିତ ଶୁଦ୍ଧ

ସଂସ୍କରଣ ପ୍ରକାଶ କରିବା । ପ୍ରାଚୀ ସମିତି ପାଇଁ ପୋଥି ସଂଗ୍ରହ କାର୍ଯ୍ୟରେ ବିଚ୍ଛନ୍ଦଚରଣ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ । ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ସଙ୍ଗ, ସଂସ୍କୃତ, ଓଡ଼ିଆ, ପାଲି, ପ୍ରାକୃତ ଭାଷାରେ ବ୍ୟୁତ୍ପତ୍ତି ତଥା ଭାଷାତତ୍ତ୍ୱରେ ଗଭୀର ପ୍ରବେଶ ପୋଥିମାନଙ୍କ ପାଠସଂଶୋଧନ କାର୍ଯ୍ୟରେ ବିନିଯୁକ୍ତ ହେଉଥିଲା । କୌଣସି ଏକ ଗ୍ରନ୍ଥ ପ୍ରକାଶ ବେଳକୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ତହିଁରେ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ସଂଯୋଜନ କରୁଥିଲେ । କବିଙ୍କ ବଂଶ ପରିଚୟ, ସମୟ ନିରୂପଣ, ତାଙ୍କ ଅନ୍ୟାନ୍ୟ କୃତିମାନଙ୍କ ସହିତ କାବ୍ୟଟିର ତୁଳନାତ୍ମକ ସମୀକ୍ଷା ତଥା କାବ୍ୟର ବିଶ୍ଳେଷଣାତ୍ମକ ସମାଲୋଚନା ତହିଁରେ ସ୍ଥାନ ପାଉଥିଲା । ଓଡ଼ିଆ ସାହିତ୍ୟରେ ତାତ୍ତ୍ୱିକ ସମାଲୋଚନା ମୂଳକ ସନ୍ଦର୍ଭ ରଚନା କରିବା ପରମ୍ପରାର ଆଦ୍ୟ ପ୍ରବର୍ତ୍ତକ ରୂପେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନାମ ଚିରସ୍ମରଣୀୟ ହୋଇ ରହିଛି । ସଂସ୍କୃତ ଆଲଙ୍କାରିକ ଗ୍ରନ୍ଥମାନଙ୍କ ପରିଶୀଳନ କରି ଅଧ୍ୟାପକ ମହାନ୍ତି ଓଡ଼ିଆ କାବ୍ୟମାନଙ୍କର ମୂଲ୍ୟାୟନ କରୁଥିଲେ । ବିଶ୍ୱରେ ଉଚ୍ଚପ୍ରଶଂସିତ ସଂସ୍କୃତ କାବ୍ୟମାନଙ୍କ ସହିତ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟମାନେ କିପରି ତୁଳନୀୟ ତାହା ସେ ବିଭିନ୍ନ କାବ୍ୟୋଦ୍ଧୃତି ଦ୍ୱାରା ପ୍ରକାଶ କରୁଥିଲେ । ସଂସ୍କୃତ ଅଲଙ୍କାର ଶାସ୍ତ୍ରମାନଙ୍କରେ କାବ୍ୟକଳାର ନିର୍ଦ୍ଦେଶିତ ଲକ୍ଷଣମାନ କିପରି ଓଡ଼ିଆ କାବ୍ୟମାନଙ୍କରେ ନିଖୁଣ ଆତ୍ମପ୍ରକାଶ କରିଛି ତାହା ଆର୍ତ୍ତବଲ୍ଲଭ ନିପୁଣତାର ସହିତ ପ୍ରତିପାଦନ କରୁଥିଲେ । ଲେଖାରେ ହେଉ, ଅଭିଭାଷଣରେ ହେଉ ଆର୍ତ୍ତବଲ୍ଲଭ ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ପ୍ରଖ୍ୟାପନ କରିବାର ଚଳନ୍ତି ଦୁର୍ଗ ବୋଲି ବିବେଚିତ ହେଉଥିଲେ । ଇଂରାଜୀ ଶିକ୍ଷିତ ମହଲରେ ଓଡ଼ିଆ କାବ୍ୟ କବିତା ପ୍ରତି ଯେଉଁ ଅବହେଳା, ଅନାଦର ଓ ଅରୁଚି ପ୍ରକାଶ ପାଉଥିଲା ତାହା ଆର୍ତ୍ତବଲ୍ଲଭଙ୍କ ପ୍ରଗାଢ଼ ଧିଷଣା ଓ ପ୍ରଚୁର ପରିଶ୍ରମ ଫଳରେ ଦୂର ହେବାକୁ ଲାଗିଲା । ଉଚ୍ଚ ଶିକ୍ଷିତ ଯୁବକମାନେ ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ ହେଲେ ଓ ପ୍ରାଚୀ ସମିତି ପରିସରରେ ଯୁବ ସାହିତ୍ୟିକମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଓଡ଼ିଶାର ପ୍ରାଚୀନ ଐତିହ୍ୟ ଯେ ପ୍ରାମାଣିକ ସାଧନା ଓ ସିଦ୍ଧିର ଦୃଢ଼ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଓ ଭାରତର ଯେକୌଣସି ପ୍ରାନ୍ତୀୟ ସାହିତ୍ୟ, କଳା, ସଂସ୍କୃତିର ସମକକ୍ଷ ଓ ସ୍ଥଳ ବିଶେଷରେ ଅଧିକ ମର୍ଯ୍ୟାଦାବନ୍ତ, ତାହା ଆର୍ତ୍ତବଲ୍ଲଭ ଶାସ୍ତ୍ରୀୟ ପ୍ରମାଣ ସହିତ ଉପସ୍ଥାପନ କରିବାକୁ ଲାଗିଲେ । ଗ୍ରନ୍ଥ ସମ୍ପାଦନା କାର୍ଯ୍ୟରେ ଆର୍ତ୍ତବଲ୍ଲଭଙ୍କର ସହକାରୀ ଥିଲେ ବିଚ୍ଛନ୍ଦଚରଣ । ଖଣ୍ଡ ବିଶିଷ୍ଟ ଚଉତିଶା ମଧୁଚକ୍ରର ସଂକଳନ ଓ ସମ୍ପାଦନ କାର୍ଯ୍ୟ ସେ ସମ୍ପନ୍ନ କରିଥିଲେ । ଓଡ଼ିଶାରେ ପ୍ରଚଳିତ ଚଉତିଶା ସାହିତ୍ୟର ଏହି ସଂକଳନ ହେଉଛି ସର୍ବବୃହତ୍ ସଂକଳନ ।

ପ୍ରାଚୀ ସମିତି ଦ୍ୱାରା ସଂକଳିତ ଗ୍ରନ୍ଥମାନଙ୍କ ପ୍ରକାଶ ନିମିତ୍ତ ପ୍ରାଚୀ ମୁଦ୍ରଣାଳୟ (ପ୍ରାଚୀ ପ୍ରେସ୍) ପ୍ରତିଷ୍ଠା କରାଯାଇଥିଲା । ବିଚ୍ଛନ୍ଦଚରଣ ପ୍ରାଚୀ ମୁଦ୍ରଣାଳୟର

ତତ୍ତ୍ୱାବଧର୍ତ୍ତା (ସୁପରିନ୍‌ଟେଣ୍ଡେଣ୍ଟ) ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ନିର୍ଭୁଲ ଓ ନିର୍ମଳ ମୁଦ୍ରଣ କାର୍ଯ୍ୟ ପାଇଁ ପ୍ରାଚୀ ମୁଦ୍ରଣାଳୟ ସେ କାଳରେ ଖ୍ୟାତି ଅର୍ଜନ କରିଥିଲା । ବିଚ୍ଛନ୍ଦଚରଣଙ୍କ ନିରଳସ ଉଦ୍ୟମ ଫଳରେ ତାହା ସମ୍ଭବ ହୋଇଥିଲା ।

କଟକ ଗଣେଶଘାଟ ରାସ୍ତାରେ ଏକ ଦୋମହଲା ଘରେ ପ୍ରାଚୀମୁଦ୍ରଣାଳୟ ଓ ପ୍ରାଚୀ ସମିତିର ମୁଖ୍ୟ କାର୍ଯ୍ୟାଳୟ ଅବସ୍ଥାପିତ ହୋଇଥାଏ । ଉପର ମହଲାରେ ରହୁଥାନ୍ତି ବିଚ୍ଛନ୍ଦଚରଣ । ଏପର୍ଯ୍ୟନ୍ତ ବିଚ୍ଛନ୍ଦଚରଣ ବିବାହ କରି ନଥାନ୍ତି । ପାଖରେ ସେବକ ଓ ସହାୟକ ଭାବରେ ମାସ୍ତାଧର ମହାନ୍ତି କାମ କରୁଥାନ୍ତି । ଆଜୀବନ ମାସ୍ତାଧର ମହାନ୍ତି ବିଚ୍ଛନ୍ଦଚରଣଙ୍କ ସେବାରେ ନିଜକୁ ନିୟୋଜିତ କରି ନେଇଥିଲେ । ଅନୁଚର ସେବକ "ମାସ୍ତାଧର" ନାମକୁ ବିଚ୍ଛନ୍ଦଚରଣ ଅଭିଧା ଓ ଶ୍ଲେଷ ଉଭୟାର୍ଥକ କରି ନିଜ କବିତା ସଂକଳନ "କବିତା କୁମୁଦ" ଗ୍ରନ୍ଥରେ ଉଲ୍ଲେଖ କରି ଯାଇଛନ୍ତି । ଜୀବନ ରାହାରେ ଝଞ୍ଜାପଥର ବିଚ୍ଛନ୍ଦଚରଣଙ୍କର ଖଣ୍ଡେ "ଆଶାବାଡ଼ି" ଥିଲେ ମାସ୍ତାଧର । ମାସ୍ତାଧରଙ୍କର ସେବା ଶୁଶ୍ରୂଷା ଯେ ନ ଦେଖିଛନ୍ତି ସେ ଏ ବାକ୍ୟକୁ ଅତିଶୟୋକ୍ତି ବୋଲି ମନେ କରିବା ବିଚିତ୍ର ନୁହେଁ ।

ପ୍ରାଚୀ ସମିତି, ପ୍ରାଚୀ ପ୍ରେସ୍ ସଙ୍ଗକୁ ପ୍ରାଚୀ ପତ୍ରିକାର ସମ୍ପାଦନା ଦାୟିତ୍ୱରେ ରହିଲେ ବିଚ୍ଛନ୍ଦଚରଣ । ୧୯୩୧ ମସିହାରେ ଇଂରାଜୀ ତ୍ରୈମାସିକ ପତ୍ରିକା ପ୍ରାଚୀର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା । ଓଡ଼ିଶା ବାହାରେ ଦେଶ ବିଦେଶରେ ଓଡ଼ିଆ ସଂସ୍କୃତି ଓ ସାହିତ୍ୟକୁ ପରିଚିତ କରିବା ପାଇଁ ଇଂରାଜୀ ଅନୁବାଦ ମାଧ୍ୟମରେ ଲେଖାମାନ ପ୍ରାଚୀରେ ପ୍ରକାଶିତ ହେଉଥିଲା । ବିଚ୍ଛନ୍ଦଚରଣଙ୍କର ସର୍ବଜନ ପ୍ରଶଂସିତ ଇଂରାଜୀ ଭାଷା ଜ୍ଞାନ, ଇଂରାଜୀ ଓ ଓଡ଼ିଆ ସାହିତ୍ୟରେ ପ୍ରବେଶ, ଉଭୟ ସାହିତ୍ୟର ମାର୍ମିକବୋଧ ଏବଂ ଅନୁବାଦ ସାମର୍ଥ୍ୟ ଅଳ୍ପକାଳ ମଧ୍ୟରେ ପ୍ରାଚୀ ପତ୍ରିକାକୁ ଆନ୍ତର୍ଜାତିକ ପ୍ରଶଂସାର ଭାଗୀ କରାଇଥିଲା । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କ କାବ୍ୟାଂଶ ଓ କବିତାର ଇଂରାଜୀ ରୂପାନ୍ତର ସେତେବେଳେ ଓଡ଼ିଶା ତଥା ଭାରତର ସୀମା ଅତିକ୍ରମ କରି ଇଂଲଣ୍ଡ, ଆମେରିକା ଓ ୟୁରୋପୀୟ ଦେଶ-ମାନଙ୍କରେ ପହଞ୍ଚିଗଲା ।

ବିଚ୍ଛନ୍ଦଚରଣଙ୍କ ବିଷୟରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ଲେଖିଛନ୍ତି, "ପ୍ରାଚୀ ସମିତି ପକ୍ଷରୁ ପ୍ରକାଶିତ 'ପ୍ରାଚୀ' ପତ୍ରିକାର ପୁରୋଧା ପଦବୀରେ ପ୍ରାପ୍ତାଧିକାର ହୋଇ ସେ କଳାକୁଶଳ ଉତ୍କଳ ଗୌରବର ପରାକାଷ୍ଠା ପ୍ରଦର୍ଶନ ପୂର୍ବକ ନିଜର କର୍ମଦକ୍ଷତା ତଥା ପବିତ୍ର ଦେଶପ୍ରାଣତାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଅଛନ୍ତି ।"

ବଚ୍ଛନ୍ଦଚରଣ ପ୍ରାଚୀ ସମିତି କୋଠାରେ ରହୁଥିଲା ବେଳେ ଦିନେ ବଡ଼ ସକାଳୁ ମାୟାଧର ତାଙ୍କୁ ଖବର ଦେଲେ ଯେ ଜଣେ କେହି ଭଦ୍ରଲୋକ ସାକ୍ଷାତ କରିବାକୁ ଆସିଛନ୍ତି । ଚେହେରାରୁ ସେ ଯେ ଜଣେ ପ୍ରତିଷ୍ଠାପନ୍ନ ବ୍ୟକ୍ତି ତାହା ମାୟାଧରଙ୍କ ଦୃଷ୍ଟି ଏଡ଼ାଇ ପାରିନଥିଲା । ଭଦ୍ରବ୍ୟକ୍ତିଙ୍କୁ ଉପର ମହଲାକୁ ଆଣିବାକୁ ବଚ୍ଛନ୍ଦଚରଣ କହୁଛନ୍ତି, ଏତିକିବେଳେ ଭଦ୍ରଲୋକ ସ୍ୱୟଂ ଆସି ଉପର ମହଲାରେ ପହଞ୍ଚିଗଲେ । ବଚ୍ଛନ୍ଦଚରଣ ଦେଖିଲେ ଯେ ସେ ଭଦ୍ରବ୍ୟକ୍ତି ଆଉ କେହି ନୁହନ୍ତି, ସ୍ୱୟଂ ଉତ୍କଳ ଗୌରବ ମଧୁସୂଦନ ଦାସ କେ. ସି. ଆଇ. ଇ । ବଚ୍ଛନ୍ଦଚରଣଙ୍କର ହର୍ଷ ବିସ୍ମୟର ସୀମା ରହିଲା ନାହିଁ । ଆସନ ଗ୍ରହଣ କରୁ କରୁ ମଧୁସୂଦନ ଦାସ କହିଲେ, "ଜାଣିଛ ବଚ୍ଛନ୍ଦ ! ମଧୁସୂଦନ ଦାସ କାହା ପାଖକୁ ଯାଏ ନାହିଁ, ସମସ୍ତେ ତାହା ପାଖକୁ ଆସନ୍ତି । କିନ୍ତୁ ଆଜି ମୁଁ ତୁମ ପାଖକୁ ଆସିଛି ତୁମ ଉତ୍କୃଷ୍ଟ ପ୍ରତିଭାକୁ ବଧାଇ ଜଣାଇବା ପାଇଁ । ଭାବିଥିଲି ଖଣ୍ଡେ ପୋଷ୍ଟକାର୍ଡ ଲେଖିଦେବି ବୋଲି । କିନ୍ତୁ ତୁମ ପରି ପ୍ରତିଭାଧର ବ୍ୟକ୍ତିଙ୍କ ପ୍ରତି ତାହା ଉଚିତ ବ୍ୟବହାର ହୋଇ ନଥାନ୍ତା । ତେଣୁ ଭାବିଲି ନିଜେ ଆସି ତୁମ୍ଭ ପ୍ରତିଭାକୁ ବଧାଇ ଜଣାଇ ଯିବି । ମୋର ଗୋଟାଏ ଧାରଣା ଥିଲା ଯେ ଓଡ଼ିଶାରେ ମୋ ପରେ ଆଉ କେହି ସେପରି ଇଂରାଜୀ ଲେଖି ପାରିବେ ନାହିଁ । କିନ୍ତୁ "ପ୍ରାଚୀ" ପତ୍ରରୁ ତୁମ୍ଭର ଇଂରାଜୀ ଭାଷାର ଦଖଲ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଛି ଓ ଇଂରାଜୀ ଲେଖାରେ ତୁମ୍ଭଙ୍କୁ ମୋ ଉପଯୁକ୍ତ ଉତ୍ତରାଧିକାରୀ ବୋଲି ମଣୁଛି ।" ଗୁଣଗ୍ରାହୀ ମହାମାନୀ ମଧୁସୂଦନ ଦାସଙ୍କ ତୁଣ୍ଡରୁ ଏହି କେତେ ପଦ କଥା ଶୁଣି ବଚ୍ଛନ୍ଦ ଚରଣ ଅନୁଭବ କଲେ, ଯେପରି ସେପରି ମାଣିକ୍ୟ ମୁକୁଟରେ କିଏ ତାଙ୍କ ମୁଣ୍ଡକୁ ମଣ୍ଡି ଦେଉଛି । ସେ ସ୍ୱତଃ ଅବନତ ହୋଇ ପଡ଼ିଲେ । ମଧୁସୂଦନ କହିଲେ, "ମୁଁ ଜାଣେ, ତୁମେ ଅସାଧ୍ୟ ସାଧନ କରି ପାରିଥାନ୍ତ; କିନ୍ତୁ ଶ୍ରେଷ୍ଠ ହୋଇଯିବାକୁ ତାହା ଯଥେଷ୍ଟ ହେବ ନାହିଁ । ଯଦି ତୁମ ପିଲା ବୟସରେ ମୁଁ ତୁମକୁ ଜାଣିଥାନ୍ତି, ତେବେ ତୁମ ଶିକ୍ଷା ପାଇଁ ମୁଁ ତୁମକୁ ବିଲାତ ନେଇ ଯାଇଥାନ୍ତି । ଆଉ ଏ ବୟସରେ ଏ ଯୋଗ ଶିକ୍ଷା ମାନିବ ନାହିଁ । ଏଇଟା ଏ ଦେଶର ଭାଗ୍ୟ !" ମଧୁସୂଦନ ବଙ୍ଗଳା ଭାଷାରେ ଏସବୁ କଥା କହୁଥାନ୍ତି । ନିଜର ଅନାମଧ୍ୟ ହୃଦ୍ୟ ଗୋଲ କଥାବାର୍ତ୍ତା କଲାବେଳେ ସେ ସ୍ୱାଭାବିକ ଭାବରେ ବଙ୍ଗଳାରେ ହିଁ କଥାବାର୍ତ୍ତା କରନ୍ତି । ଏହା ତାଙ୍କ ସ୍ୱଭାବସିଦ୍ଧ ଆଚରଣ ଥିଲା । ମଧୁସୂଦନଙ୍କ ଏଇ କେତୋଟି ବାକ୍ୟକୁ ବଚ୍ଛନ୍ଦଚରଣ ଜୀବନସାରା ସ୍ମୃତି ସମ୍ପଦ କରି ସାଇତି ରଖିଥିଲେ ଓ ଯେତେବେଳେ ଏହି ଘଟଣାର ଉଲ୍ଲେଖ କରୁଥିଲେ, କୃତଜ୍ଞତାରେ ତାଙ୍କ ଯୁକ୍ତହାତ ଯୋଡ଼ା ହୋଇ ଯାଉଥିଲା । "ଉତ୍କଳ କୋହିନୂର ମଧୁସୂଦନ" ଶୀର୍ଷକ କବିତାରେ ସେ ମଧୁସୂଦନଙ୍କୁ 'ମାନବେନ୍ଦ୍ର' ଓ 'ସୁଖଦା ସିନ୍ଧୁ' ବୋଲି ସମ୍ବୋଧନ କରି ଲେଖିଛନ୍ତି, 'ସ୍ୱଜାତେ ସାବିତ ନମେ ଗାଥା ସଦାକାର, ମଧୁ ନାମୁ ଝରୁଥିବ ମଧୁ ନିରନ୍ତର ।"

ପ୍ରାଚୀ ପାଇଁ ବିଚ୍ଛନ୍ଦଚରଣ ଓ ବିଚ୍ଛନ୍ଦଚରଣଙ୍କ ପାଇଁ ପ୍ରାଚୀ ଉଚ୍ଚ ପ୍ରଶଂସିତ ହୋଇଥିଲେ । ବିଚ୍ଛନ୍ଦଚରଣଙ୍କ ଅନୁବାଦ-କଳା-ସାମର୍ଥ୍ୟର ପରୀକ୍ଷାଭୂମି ଥିଲା 'ପ୍ରାଚୀ' । କଷଟି ପଥରରେ ସୁନାଖଣ୍ଡିକ କଷି ହୋଇ ଯାଉଥିଲା । ଫଳରେ କଷଟି ବକ୍ଷରେ ପ୍ରତିଭାର ଯେଉଁ ଉଜ୍ଜ୍ୱଳ ରେଖା ଅଙ୍କିତ ହୋଇ ଯାଇଛି, ତାହା ଗ୍ରାହକ-ବଣିକମାନଙ୍କର ଆଦର ସଂପଦ ହୋଇ ରହିଥିବ । କଳିଙ୍ଗ ନାବିକମାନେ ଦିନେ 'ସାତ ସମୁଦ୍ର ତେରଅଶ ପାରି' ଦେଶକୁ ବୋଇତ ମେଲି ଏ ଭୂଇଁର କଳାମୟ ପଣ୍ୟ ସାମଗ୍ରୀକୁ ପହଞ୍ଚାଇ ଦେଉଥିଲେ । ବିଚ୍ଛନ୍ଦଚରଣ ସେମାନଙ୍କର ସାଂସ୍କୃତିକ ଉତ୍ତର ଦାୟାଦ ରୂପେ ଏ ଭୂଇଁର ଲଳିତ କାବ୍ୟ କଳାକୁ ଆନ୍ତର୍ଜାତିକ ବିପଣୀକୁ ଶୋଭନ ଅନୁବାଦ ମାଧ୍ୟମରେ ପ୍ରେରଣ କରି ଯଶସ୍ୱୀ ହେଲେ ।

କିନ୍ତୁ "ପ୍ରାଚୀ' ପତ୍ରିକା ଦୀର୍ଘଜୀବୀ ହୋଇ ପାରିଲା ନାହିଁ । ପ୍ରାଚୀ ସମିତି ମଧ୍ୟ ଭାଙ୍ଗି ଗଲା । ୧୯୩୦ ମସିହାରୁ ୧୯୩୪ ମସିହା ପର୍ଯ୍ୟନ୍ତ ପ୍ରାଚୀ ସମିତି ଚାଲିଥିଲା ଓ ବିଚ୍ଛନ୍ଦଚରଣ ମାସିକ ତିରିଶି ଟଙ୍କା ମାତ୍ର ଭତ୍ତା ନେଇ ପ୍ରାଚୀ ସମିତି, ପ୍ରେସ ଓ ପତ୍ରିକା କଥା ବୁଝୁଥିଲେ । ତାଙ୍କୁ ରହିବାକୁ ଘର ମିଳିଥିଲା ଓ ସଙ୍ଗରେ ମାସ୍କାଧରଙ୍କ ପରି ବିଶ୍ୱସ୍ତ ସେବକ ମଧ୍ୟ ଥିଲେ । ବିଚ୍ଛନ୍ଦଚରଣ ଥିଲେ ଅବିବାହିତ ଓ ତାଙ୍କ ଜୀବନ ଯାପନ ପ୍ରଣାଳୀ ଥିଲା ସରଳ ଓ ନିରାଡ଼ମ୍ବର । ତେଣୁ ସ୍ୱଳ୍ପ ଭତ୍ତାରେ ଚଳିଯିବା ତାଙ୍କ ପକ୍ଷରେ ସମ୍ଭବ ହେଉଥିଲା । ସର୍ବୋପରି ଜାତୀୟ ପ୍ରୀତିର ଅଖଣ୍ଡ ଉନ୍ମାଦନାରେ ସେ ବଞ୍ଚୁଥିଲେ । ତାଙ୍କ ଭାଷାରେ କହିଲେ, ଜାତୀୟ ପ୍ରୀତି ଥିଲା ତାଙ୍କ ନାସାର ନିଃଶ୍ୱାସ ପବନ । ନିଜର ଆର୍ଥିକ ପରିସ୍ଥିତି ପ୍ରତି ଦୃଷ୍ଟି ନଦେଇ ସେ ତାଙ୍କର ସମସ୍ତ ଶ୍ରମକୁ ଜାତି ସ୍ୱାର୍ଥ ଉଦ୍ଦେଶ୍ୟରେ ଯଜ୍ଞାହୁତି ବୋଲି ମଣୁଥିଲେ ।

ପ୍ରାଚୀ ଉଠାଇ ପାରିଲା ନାହିଁ । ଏଥିପାଇଁ ପରିଚାଳନା ସମିତିର ସଭ୍ୟମାନଙ୍କ ମଧ୍ୟରେ ମନୋମାଳିନ୍ୟ କଥାଟାକୁ ଅସ୍ୱୀକାର କରି ହେବ ନାହିଁ । ଅବଶ୍ୟ ସେ ମନୋମାଳିନ୍ୟ ସାପ୍ୟ ଭାବରେ ରହିଥିଲା କିନ୍ତୁ ପ୍ରକାଶ୍ୟ ଭାବରେ ଆର୍ଥିକ ଅସ୍ୱଚ୍ଛଳତା ହିଁ କାରଣ ରୂପେ ଦେଖା ଦେଲା । ପୋଥି ପାଠୋଦ୍ଧାର, ପୋଥି ସଂଶୋଧନ ଲାଗି ତଥା ଗ୍ରନ୍ଥ ପ୍ରକାଶନ ଲାଗି ବ୍ୟୟବହୁଳ କର୍ମଯୋଜନା ଗ୍ରହଣ କରିବାକୁ ହେଉଥିଲା । ଦେଖାଗଲା ଯେ ପ୍ରାଚୀ ସମିତି ପ୍ରକାଶିତ ଗ୍ରନ୍ଥମାନ ଗୁଣଗତ ମାନଦୃଷ୍ଟିରୁ ଉତ୍କୃଷ୍ଟ ହେଲେହେଁ ବଜାର ଚାହିଦାରେ ମହଙ୍ଗା ବୋଧ ହେଲେ । ତା'ଛଡ଼ା ବୈଷୟିକ ବୁଦ୍ଧି ସଂପନ୍ନ ନହେଲେ କୌଣସି ବ୍ୟବସାୟରେ ପାରି ଉଠିବା ସହଜ କଥା ନୁହେଁ । ପ୍ରାଚୀ ସମିତିର ପରିଚାଳକମାନଙ୍କର ଜାତୀୟ ପ୍ରୀତି ତଥା ଆଦର୍ଶବୋଧ ଅତୁଳନୀୟ ଥିଲେ ହେଁ, ବୈଷୟିକ ବୁଦ୍ଧି ଅଥବା ବ୍ୟାବସାୟିକ

କୌଶଳରେ ସେମାନେ ପାରଙ୍ଗମ ନଥିଲେ । ଗ୍ରନ୍ଥ ପ୍ରସ୍ତୁତ କରିବା ଗୋଟିଏ ସାମର୍ଥ୍ୟର ବ୍ୟାପାର, ତ୍ରୁଟିପୂର୍ଣ୍ଣ ଶୁଦ୍ଧ ମୁଦ୍ରଣ ବାହାର କରିବା ଆଉ ଗୋଟିଏ ସାମର୍ଥ୍ୟର କଥା । ଏ ଉଭୟ ସାମର୍ଥ୍ୟ 'ପ୍ରାଚୀ'ର ପରିଚାଳକ ଗୋଷ୍ଠୀଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । କିନ୍ତୁ ଗ୍ରନ୍ଥ ପ୍ରକାଶ କରି ତାହାକୁ ଚଳନ୍ତି ବଜାରରେ ପରିବେଷଣ କରିବା ସାମର୍ଥ୍ୟ ଯଥେଷ୍ଟ ପରିମାଣରେ ଏ ଗୋଷ୍ଠୀର ନଥିଲା । ଆଉ ଏକ ପ୍ରତ୍ୟବାୟ ଆସି ଉପସ୍ଥିତ ହେଲା । ତା ହେଉଛି, ଓଡ଼ିଶାରେ ବହି କିଣି ପଢ଼ିବା ମନୋବୃତ୍ତି କ୍ଷୀଣ ହୋଇ ଯାଇଥିଲା । ଶିକ୍ଷିତ ମହଲ ତ ଓଡ଼ିଆ କାବ୍ୟ ସାହିତ୍ୟ ପ୍ରତି ଏକାନ୍ତ ବୀତସ୍ପୃହ ଓ ବିମୁଖ ଥିଲେ, ଓଡ଼ିଶାର ପୁରପଲ୍ଲୀରେ ପହଞ୍ଚିବା ପାଇଁ ପ୍ରାଚୀ ଗ୍ରନ୍ଥମାଳାର ବ୍ୟାବହାରିକ ଭିତ୍ତିଭୂମି ନଥିଲା ।

ପ୍ରାଚୀ ସମିତି ଉଦୟ ହୋଇ ଅଳ୍ପକାଳ ମଧ୍ୟରେ ଅସ୍ତ ହୋଇଗଲା ସତ, କିନ୍ତୁ ଏ ଜାତିର ସାହିତ୍ୟ ଓ ସଂସ୍କୃତି ପାଇଁ ତାହାର ଅବଦାନ ଓ ଦିଗ୍‌ଦର୍ଶନ ଚିର ଅନୁକରଣୀୟ ହୋଇ ରହିଗଲା । ଓଡ଼ିଆ ସାହିତ୍ୟର ବିଭବକୁ ଭାଷାନ୍ତର କରି ବିଶ୍ୱ ଦରବାରରେ ଉପସ୍ଥାପନ କରିବାର ସଂକଳ୍ପ ଏବେ ମଧ୍ୟ ଅପୂରଣ ରହିଛି । କାର୍ଯ୍ୟକାରିତା ଅନୁବାଦ କାର୍ଯ୍ୟରେ ବିଚ୍ଛନ୍ଦଚରଣଙ୍କ ନାମ ସହିତ ସାଫଲ୍ୟ ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଆର୍ତ୍ତବଲ୍ଲଭଙ୍କ ନିର୍ଦ୍ଦେଶ ଓ ବିଚ୍ଛନ୍ଦଚରଣଙ୍କ କଠିନ ଶ୍ରମସାଧନା ଏକକୋଟ ହୋଇ ନଥିଲେ, ଆମର ଅମୂଲ୍ୟ ପ୍ରାଚୀନ ସାହିତ୍ୟ ବିସ୍ମୃତିର ଅନ୍ଧକାର ଗର୍ଭରେ ଲୀନ ହୋଇ ଯାଇଥାନ୍ତା ।

ପତ୍ରିକା ସଂପାଦନ କ୍ଷେତ୍ରରେ ବିଚ୍ଛନ୍ଦଚରଣ ପ୍ରଥମେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ 'ପ୍ରାଚୀ'ର ସଂପାଦକ ଥିଲେ । ପରେ ଇଂରାଜୀ ଭାଷାରେ ପ୍ରକାଶିତ "ବୈତରଣୀ" ପତ୍ରିକାର ମଧ୍ୟ ସଂପାଦକ ହେଲେ । "ଜର୍ଣ୍ଣାଲ୍ ଅଫ୍ ଦ ଓଡ଼ିଶା ଏକାଡ଼େମୀ" ପତ୍ରିକା ତଥା ଓଡ଼ିଆ ଭାଷାରେ 'ଜାଗରଣ' ପତ୍ରିକାର ସେ ସହ-ସଂପାଦକ କାର୍ଯ୍ୟ ତୁଲାଉ ଥିଲେ । ପରବର୍ତ୍ତୀ ସମୟରେ ସେ ସରକାରୀ ପତ୍ରିକା "ଉତ୍କଳପ୍ରସଙ୍ଗ" (ଓଡ଼ିଆ), ଏବଂ "ଓଡ଼ିଆ ରିଭ୍ୟୁ" (ଇଂରାଜୀ)ର ସଂପାଦକ ଭାବରେ ଅବସ୍ଥାପିତ ହୋଇଥିଲେ ।

୧୯୩୪ ମସିହାରେ ପ୍ରାଚୀ ସଂସ୍ଥା ବନ୍ଦ ହୋଇଯିବା ପରେ ବିଚ୍ଛନ୍ଦଚରଣ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ସଂକଳନ କାର୍ଯ୍ୟରେ ପ୍ରଖ୍ୟାତଯଶା ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଜଣେ ବରିଷ୍ଠ ସହକାରୀ ଭାବରେ କାର୍ଯ୍ୟ କରିଥିଲେ । ବିଚ୍ଛନ୍ଦଚରଣଙ୍କ ଭାଷାଜ୍ଞାନ ଓ ପ୍ରତିଭାରେ ମୁଗ୍‌ଧ ହୋଇ ପ୍ରହରାଜ ମହୋଦୟ ଲେଖିଥିଲେ "ବିଚ୍ଛନ୍ଦ ଚରଣଙ୍କର ଓଡ଼ିଆ ଓ ଇଂରାଜୀ ଉଭୟ ଭାଷାରେ ଏତେ ଦଖଲ ଅଛି ଯେ ତାହା ଦେଖି ତାଙ୍କ ପ୍ରତି ମୋର ଈର୍ଷା ହୁଏ ।" ଗୋପାଳଚନ୍ଦ୍ର ପ୍ରହରାଜ ଥିଲେ ଓଡ଼ିଶାର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଓ ପ୍ରସିଦ୍ଧ ଆଇନଜୀବୀ । ସୁସାହିତ୍ୟିକ ଭାବରେ ତାଙ୍କର ଖୁବ୍ ଖ୍ୟାତି ଥିଲା ।



# ଉତ୍କଳ ସାହିତ୍ୟ ସମାଜ

## (୧୯୩୨ ରୁ ୧୯୪୪ ବାରବର୍ଷ)

କଟକରେ ଅବସ୍ଥାପିତ ଉତ୍କଳ-ସାହିତ୍ୟ-ସମାଜ ଦିନେ ସମଗ୍ର ଓଡ଼ିଶାର ସାହିତ୍ୟିକ କାର୍ଯ୍ୟକଳାପର ସ୍ୱୀକୃତ ପ୍ରାଣକେନ୍ଦ୍ର ଥିଲା । ୧୮୯୫ ମସିହାରେ କଟକ ଟେଷ୍ଟ୍ ନଂ ସ୍କୁଲର "ଆଲୋଚନା ସଭା"ରୁ ଏ ଅନୁଷ୍ଠାନର ଜନ୍ମ ଓ ୧୯୦୩ ମସିହା ମଇମାସ ୭ ତାରିଖରେ ବିଧିବଦ୍ଧ ଭାବରେ ଏହି ଅନୁଷ୍ଠାନ ପ୍ରତିଷ୍ଠା କରାଗଲା ଓ ଭକ୍ତକବି ମଧୁସୂଦନ, ବ୍ୟାସକବି ଫକୀରମୋହନ, କବିବର ରାଧାନାଥ ରାୟ, ପଲ୍ଲୀକବି ନନ୍ଦକିଶୋରଙ୍କ ସକ୍ରିୟ ପୃଷ୍ଠପୋଷକତାରେ ଏହା ଅଗ୍ରଗତି କରିବାକୁ ଲାଗିଲା । ସମଷ୍ଟିଗତ ଭାବରେ ସଂଘବଦ୍ଧ ଦାୟିତ୍ୱରେ ସାହିତ୍ୟ ସାଧନା କରିବା ଏହି ଅନୁଷ୍ଠାନର ଲକ୍ଷ୍ୟ ବୋଲି ଉଦ୍‌ଘୋଷିତ ହେଲା । ବ୍ୟକ୍ତିଗତ ସାହିତ୍ୟ ସାଧନାରେ ରତ ଥିବା ସାହିତ୍ୟିକମାନଙ୍କୁ ସମ୍ମିଳିତ କରି ଜାତୀୟ ପ୍ରୟୋଜନରେ ସାହିତ୍ୟ ସୃଷ୍ଟିର ମାନ ଓ ମୂଲ୍ୟବୋଧକୁ ଅକ୍ଷୁଣ୍ଣ ରଖିବା ନିମିତ୍ତ ଉଦ୍ୟମ କରିବାକୁ ଏ ଅନୁଷ୍ଠାନ ପ୍ରୟାସୀ ହେଲା । ଓଡ଼ିଆ ଜାତିର ଜୀବନ ଡୋରି ବୋଲି ସ୍ୱୀକାର କରି ତାହାର ହିତମାନ ରକ୍ଷା କରିବା ପାଇଁ ସତର୍କ ପ୍ରହରୀ ହୋଇ ରହିବାକୁ ସାହିତ୍ୟିକମାନଙ୍କୁ ଏ ଅନୁଷ୍ଠାନ ଆହ୍ୱାନ ଜଣାଇଲା । ସାହିତ୍ୟକୃତିମାନଙ୍କର ମୁକ୍ତ ସମୀକ୍ଷା ପାଇଁ ଉତ୍କଳ ସାହିତ୍ୟ ସମାଜ ମଞ୍ଚ ପ୍ରସ୍ତୁତ କଲା । ଦାୟିତ୍ୱହୀନ ଅଶୁଦ୍ଧ ଭାଷା ପ୍ରୟୋଗ ବା ଉଚ୍ଛୃଙ୍ଖଳ ଭାବ ପ୍ରକାଶକୁ ତୀବ୍ର ସମାଲୋଚନାର ଶରବ୍ୟ କରିବା ପାଇଁ ଏହି ଅନୁଷ୍ଠାନର ଅଧିବେଶନମାନ ଉଦ୍ଦିଷ୍ଟ ହେଲା । ସମ୍ମିଳିତ ଦାୟିତ୍ୱରେ ଓଡ଼ିଶାର କୃତବିଦ୍ୟ ସାହିତ୍ୟିକମାନେ ଏହି କାର୍ଯ୍ୟକ୍ରମକୁ ତତ୍ପରତାର ସହିତ ଗ୍ରହଣ କଲେ । "ଓଡ଼ିଆ ଭାଷା, ସାହିତ୍ୟ ଓ ଉତ୍କଳର ଇତିହାସ ଆଲୋଚନା ଏ ସମାଜର ଉଦ୍ଦେଶ୍ୟ" ବୋଲି ଘୋଷଣା କରାଗଲା । ପରବର୍ତ୍ତୀ ସମୟରେ ଏହି ଲକ୍ଷ୍ୟକୁ ଆଉ ଟିକିଏ ବିସ୍ତାରିତ କରି କୁହାଯାଇଛି, "ଓଡ଼ିଆ ଭାଷା ଓ ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ଉତ୍କଳ ସାହିତ୍ୟ ସମାଜର ଉଦ୍ଦେଶ୍ୟ ଅଟେ" । ୧୯୨୦ ମସିହାରେ ଏ ଅନୁଷ୍ଠାନକୁ ସରକାରୀ ରେଜେଷ୍ଟ୍ରୀଭୁକ୍ତ କରାଗଲା । ୧୯୩୪ ମସିହା ବେଳକୁ ଉତ୍କଳ ସାହିତ୍ୟ ସମାଜ ନିଜସ୍ୱ ଭୂମିରେ ନିଜସ୍ୱ ବାଣୀ ମନ୍ଦିର ନିର୍ମାଣ କରି ସାରିଥିଲା । ଏହି ବାଣୀ ମନ୍ଦିରର ନାମ ହେଉଛି ଶ୍ରୀରାମଚନ୍ଦ୍ର ଭବନ । ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର

ଭକ୍ତଙ୍କ ପବିତ୍ର ସ୍ମୃତି ସହିତ ଜଡ଼ିତ ଭୂମି ସୌଧର ନାମକରଣ କରାଯାଇଛି । ଏହି ଐତିହାସିକ ସୌଧରେ ଓଡ଼ିଆ ସାହିତ୍ୟ ଜଗତର ବହୁ ଉଲ୍ଲେଖଯୋଗ୍ୟ ଘଟଣା ଅନୁଷ୍ଠିତ ହୋଇଛି ଓ ନାନା ଗୁରୁତ୍ୱପୂର୍ଣ୍ଣ ନିର୍ଣ୍ଣୟ ଲିପିବଦ୍ଧ କରାଯାଇଅଛି । ସମକାଳୀନ ଓଡ଼ିଶାର ପ୍ରାୟ ସମସ୍ତ ବରିଷ୍ଠ ସାହିତ୍ୟିକମାନଙ୍କ ସହଯୋଗିତାରେ ଏବଂ ବଦାନ୍ୟ ରାଜା ମହାରାଜାଙ୍କ ପୃଷ୍ଠପୋଷକତାରେ ଉତ୍କଳ ସାହିତ୍ୟ ସମାଜ ଗଢ଼ି ଉଠିଥିଲେ ହେଁ ଆର୍ଥିକ ଅସ୍ୱଚ୍ଛଳତାରୁ ଉଦ୍ଧାର ପାରୁନଥିଲା । ଅନେକ ଈପ୍ସିତ କାର୍ଯ୍ୟକ୍ରମକୁ ଅର୍ଥାଭାବରୁ କାର୍ଯ୍ୟକାରୀ କରାଯାଇ ପାରୁନଥିଲା । ଆଜକୁ ପାଖ ଛୟାଳିଶ ବର୍ଷ ବିତିଯାଇଥିଲେ ହେଁ ଅନୁଷ୍ଠାନଟିର ଆର୍ଥିକ ସ୍ୱଚ୍ଛଳତାର ବିଶେଷ ଉନ୍ନତି ଘଟି ପାରିନାହିଁ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶାଖା ଅନୁଷ୍ଠାନମାନ ପ୍ରତିଷ୍ଠା କରିବା କାର୍ଯ୍ୟକ୍ରମ ଆର୍ଥିକ ଅଭାବରୁ ସଫଳ ହୋଇ ପାରିନାହିଁ । କିନ୍ତୁ ଏକ ସମୟରେ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ସଙ୍ଗୀତ ସମାଜ, ରାଞ୍ଚିର ଓଡ଼ିଶା କ୍ଲବ, ରାଞ୍ଚିର ଓଡ଼ିଆ ସାହିତ୍ୟ ପରିଷଦ, ସିଂହଭୂମିର ସିଂହଭୂମ ସାହିତ୍ୟ ସମାଜ ଉତ୍କଳ ସାହିତ୍ୟ ସମାଜର ଅଙ୍ଗୀଭୂତ ଶାଖା ଅନୁଷ୍ଠାନ ଭାବରେ କାର୍ଯ୍ୟ କରୁଥିଲେ ।

୧୯୩୬ ମସିହାରେ ବିଚ୍ଛନ୍ଦଚରଣ ପ୍ରାଚୀ ଅନୁଷ୍ଠାନର ଭାରପ୍ରାପ୍ତ କର୍ମକର୍ତ୍ତା ଥିଲାବେଳେ ଉତ୍କଳ ସାହିତ୍ୟ ସମାଜରେ ସାଧାରଣ ସଭ୍ୟ ଭାବରେ ଯୋଗ ଦେଇଥିଲେ । ବିଚ୍ଛନ୍ଦଚରଣଙ୍କ ପରମ ହିତୈଷୀ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ, ରାୟବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ ଏବଂ ଶଶିଭୂଷଣ ରାୟ ସେତେବେଳକୁ ଉତ୍କଳ ସାହିତ୍ୟ ସମାଜର ବରିଷ୍ଠ ସଭ୍ୟରୂପେ ପରିଗଣିତ ହେଉଥିଲେ । କବିବର ରାଧାନାଥ ରାୟଙ୍କ ପୁତ୍ର ଶଶିଭୂଷଣ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଏକାନ୍ତ ଘନିଷ୍ଠ ବନ୍ଧୁ ଥିଲେ । ପ୍ରତିଦିନ ସକାଳୁ ଶଶିଭୂଷଣ ତାଙ୍କ କାଳୀଗଳି ବାସଭବନରୁ ଗୁଡ଼ାଖୁରେ ଦାନ୍ତ ଘଷି ଘଷି ପ୍ରାତଃ ଭ୍ରମଣରେ ଆସି ଝାଷାକୋଠି ଲେନ୍‌ରେ ପ୍ରହରାଜ ମହୋଦୟଙ୍କ ଘରେ ପହଞ୍ଚୁଥିଲେ ଓ ସେଠାରେ ଦାନ୍ତଘଷା ପାଇଁ ସ୍ୱତନ୍ତ୍ର ଭାବରେ ରଖା ଯାଇଥିବା ଦେଏ ପାଣିକୁ ବ୍ୟବହାର କରୁଥିଲେ । ଅନେକ ସମୟ ସାହିତ୍ୟିକ ଆଳାପ ଆଲୋଚନାରେ କଟୁଥିଲା ଓ ଏକ ସ୍ନେହ ଆଦର ପୂର୍ଣ୍ଣ ପରିବେଶରେ ପ୍ରାତଃ ଭୋଜନ ସାରି ଶଶିଭୂଷଣ ଘରକୁ ଲେଉଟି ଯାଉଥିଲେ । ଆଜ ସେଭଳି ଆନ୍ତରିକ ବନ୍ଧୁପ୍ରୀତି, ଅବସରମୟ ସୁସ୍ଥ ସକାଳ ସାହିତ୍ୟ ଆଲୋଚନା ବିଳାସ ଆଉ ଦେଖିବାକୁ ମିଳେନାହିଁ । ସେଭଳି

ମିତ୍ରତା ଥିଲା ସେ ଯୁଗର ସ୍ୱତନ୍ତ୍ର ବିଭବ । ଉତ୍କଳ ସାହିତ୍ୟ ସମାଜର ସଂପାଦକ ଭାବରେ ଶଶିଭୂଷଣ ଅନେକ ବର୍ଷ ନିର୍ବାଚିତ ହୋଇଛନ୍ତି । ୧୯୩୪ ମସିହା ବେଳକୁ ବିଚ୍ଛନ୍ଦଚରଣ ସାଧାରଣ ସଭ୍ୟ ପଦରୁ ଉନ୍ନୀତ ହୋଇ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟ ନିର୍ବାହକ ସମିତିର ଜଣେ ସକ୍ରିୟ ସଦସ୍ୟ ଭାବରେ ମନୋନୀତ ହୋଇ ସାରିଥିଲେ ।

ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ଆୟୋଜିତ ବିଭିନ୍ନ ଆଲୋଚନା ସଭାରେ ବିଚ୍ଛନ୍ଦଚରଣ ଭାଗ ନେଉଥିଲେ । ଇଂରାଜୀ ଅଧ୍ୟାପକ ସୁବିଦ୍ୱାନ ଗିରିଜାଶଙ୍କର ରାୟଙ୍କ Study of Oriya words (ଓଡ଼ିଆ ଶବ୍ଦମାନଙ୍କ ବିଷୟରେ ଅଧ୍ୟୟନ) ଶୀର୍ଷକ ଆଲୋଚନାର ବିଷୟବସ୍ତୁ ଉପରେ ତଥ୍ୟ ମୂଳକ ଆଲୋକପାତ କରି ବିଚ୍ଛନ୍ଦ ଚରଣ ତା ୨ । ୯ । ୩୪ ଏକ ସ୍ୱତନ୍ତ୍ର ସଭାରେ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲେ ।

ଭୂପତି ଭଞ୍ଜଙ୍କ ବିରଚିତ 'ଗଣେଶ ବିଭୂତି' ଗ୍ରନ୍ଥର ଆଲୋଚନା ଉପସ୍ଥାପନ କରି ବିଚ୍ଛନ୍ଦଚରଣ ନିଜ ପ୍ରତିଭାର ପରିଚୟ ଦେବା ସଙ୍ଗେ ସଙ୍ଗେ ଉତ୍କଳ ସାହିତ୍ୟ ସମାଜର ୧୯୩୭ ମସିହା ତାଳଚେର ପୁରସ୍କାର ପାଇଁ ଉପଯୁକ୍ତ ବିବେଚିତ ହୋଇଥିଲେ ।

୧୯୩୭ ମସିହା ବେଳକୁ ବିଚ୍ଛନ୍ଦଚରଣ ଉତ୍କଳ ସାହିତ୍ୟ ସମାଜର ଏକାଧିକବାର ସହକାରୀ ସଂପାଦକ ପଦ ଲାଭ କରି ସାରିଥାନ୍ତି । ୧୯୩୮ ମସିହା ଏପ୍ରିଲ ୨୩ ଓ ୨୪ ତାରିଖରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ''ନିଖିଳ ଉତ୍କଳ ସାହିତ୍ୟ ସମ୍ମିଳନୀ'' ଅନୁଷ୍ଠିତ ହୋଇଥିଲା ଓ ବିଚ୍ଛନ୍ଦଚରଣ କାର୍ଯ୍ୟକାରୀ ସମିତିର ସଦସ୍ୟ ଥାଇ ସେହି ସମ୍ମିଳନୀକୁ ସଫଳ କରାଇବା ପାଇଁ ସକଳ ଉଦ୍ୟମ କରିଥିଲେ । ୧୯୩୯-୪୦ ମସିହାରେ ସେ ସହକାରୀ ସଂପାଦକ ପଦକୁ ନିର୍ବାଚିତ ହେଲେ ।

ଉତ୍କଳ ସାହିତ୍ୟ ସମାଜରେ ଯୋଗଦାନ ଓ ଉତ୍ତରୋତ୍ତର ପ୍ରତିଷ୍ଠା ଲାଭ ବିଚ୍ଛନ୍ଦଚରଣଙ୍କୁ ଓଡ଼ିଶାର ବିଦ୍ୱତ୍ ସମାଜ ଓ ବ୍ୟାପକ ସାହିତ୍ୟିକ ଗୋଷ୍ଠୀ ସହିତ ପ୍ରତ୍ୟକ୍ଷ ପରିଚିତ ହେବାର ସୁଯୋଗ ପ୍ରଦାନ କଲା । ବିଚ୍ଛନ୍ଦଚରଣ ଏହି ସୁଯୋଗକୁ ତାଙ୍କ ଚିରପରିପୋଷିତ ଆଦର୍ଶବାଦୀ ଲକ୍ଷ୍ୟର ପରିପୂରଣ ପାଇଁ ଭଗବାନଙ୍କ ଆଶୀର୍ବାଦ ବୋଲି ମନେ କଲେ । ସେ ଭାବିଲେ, ଓଡ଼ିଶାର ଗରୀୟସୀ ଶାସ୍ତ୍ରୀୟ ସାଂଗୀତିକ ପରମ୍ପରା ପ୍ରତି ଅର୍ବାଚୀନ ସାହିତ୍ୟକମାନେ ବୈମାତୃକ ଭାବ ପୋଷଣ କରୁଛନ୍ତି । ଯେଉଁ ନୂତନ କବିତା ଲେଖା ଯାଉଛି, ତାହା କର୍ଣ୍ଣମନ ରସାୟନ

ହୋଇପାରୁ ନାହିଁ । ଓଡ଼ିଆ ସଂସ୍କୃତିର ସଂଗୀତମୟ ପରମ୍ପରାର ଉଚ୍ଛେଦ ଘଟୁଛି । ସାହିତ୍ୟଠାରୁ ସଙ୍ଗୀତ ଦୂରେଇଯିବା ଫଳରେ ସାହିତ୍ୟ ଓ ସଙ୍ଗୀତ ଉଭୟ କ୍ଷୀଣବଳ ହୋଇ ଯାଉଛନ୍ତି । ଏ ଦେଶରେ ଗୋଟାଏ ଅପପ୍ରଶ୍ନର ଘଟୁଛି ଯେ ରାଗରାଗିଣୀକୁ ବାହନ କରି ଅଧୁନାତନ ଭାବସମ୍ପନ୍ନ ସାହିତ୍ୟ ଲେଖାଯାଇ ପାରିବ ନାହିଁ । ଆଧୁନିକ ଭାବ ବହନ କରିବା ପାଇଁ ଓଡ଼ିଶୀ ରାଗରାଗିଣୀ ସମର୍ଥ ନୁହେଁ । ବୈଷ୍ଣବଚରଣଙ୍କ ପକ୍ଷରେ ଏହା ସ୍ୱୀକାର କରିଯିବା ସମ୍ଭବ ନଥିଲା । ରାଗରାଗିଣୀମୟ କବିତାରେ ସର୍ବାଧୁନିକ ଭାବ ଯେ ନିପୁଣ ଭାବରେ ଫୁଟାଯାଇ ପାରେ ତାହା ବୈଷ୍ଣବଚରଣ ନିଜେ କଲମ ଧାରଣ କରି ପ୍ରମାଣ କରିଦେବାକୁ ଚାହିଁଲେ । ତାଙ୍କ ଧାରଣା ହେଲା; ରାଗରାଗିଣୀ ଯଦି ଓଡ଼ିଶାର ବିଦ୍ୱାନ ସମାଜଙ୍କ ରୁଚି ଅନୁକୂଳ ହୋଇ ପାରିବ ତେବେ ଓଡ଼ିଆ ସାହିତ୍ୟରେ ପରମ୍ପରା-ଛେଦ ଘଟିବ ନାହିଁ । ବୈଷ୍ଣବଚରଣ ରାଗରାଗିଣୀ ଅବଲମ୍ବନରେ କବିତା ରଚନା କରି ଉତ୍କଳ ସାହିତ୍ୟ ସମାଜର ବିଭିନ୍ନ ଅଧିବେଶନରେ ଉପସ୍ଥାପନ କରାଇଥିଲେ । ଏ କାର୍ଯ୍ୟରେ ତାଙ୍କୁ ପୂର୍ଣ୍ଣପ୍ରାଣରେ ସହଯୋଗ କରୁଥିଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ଓଡ଼ିଶା ଥିଏଟର୍ସ ପ୍ରତିଷ୍ଠା କରି ନାଟକ ଓ ସଙ୍ଗୀତ କ୍ଷେତ୍ରରେ କବିଚନ୍ଦ୍ର ମାର୍ଗଦର୍ଶକ ହୋଇଥାନ୍ତି ଓ ତାଙ୍କ ପାଖରେ କଣ୍ଠଶିଳ୍ପୀ ଓ କଳାକାରମାନେ ଆନୁଗତ୍ୟ ସ୍ୱୀକାର କରି ରହିଥାନ୍ତି । ତେଣୁ ରାଗରାଗିଣୀମୟ ସଙ୍ଗୀତ ପରିବେଷଣ କରିବା ପାଇଁ ଓଡ଼ିଶା ଥିଏଟର୍ସରେ କଳାକାରମାନଙ୍କ ଉପଯୋଗିତା ବୈଷ୍ଣବଚରଣଙ୍କୁ ସୁଲଭ ହୋଇଥାଏ । ବୈଷ୍ଣବଚରଣଙ୍କ ବଡ଼ଭାଇ ପଦ୍ମଚରଣ ହେଉଛନ୍ତି କାଳୀଚରଣଙ୍କ ମଉସା । ସେହି ସମ୍ପର୍କରୁ ସେ ବୈଷ୍ଣବଚରଣଙ୍କୁ ମଉସା ବୋଲି ଡାକୁଥିଲେ । ଭାଷାକୋଷ କାମବେଳକୁ କାଳୀଚରଣ ବୈଷ୍ଣବଚରଣଙ୍କ ସହିତ ଘନିଷ୍ଠ ଆତ୍ମୀୟତାରେ ଆବଦ୍ଧ ହୋଇ ଯାଇଥିଲେ । କାଳୀଚରଣ ଜାଣିଥିଲେ "ଓଡ଼ିଶୀ ଗୀତ, ଓଡ଼ିଆ ଛାନ୍ଦ ଥିଲା ମଉସାଙ୍କର ଜୀବନର ଜୀବନ" (୨୭) ତେଣୁ ମଉସାଙ୍କୁ ସାହାଯ୍ୟ କରିବା ପାଇଁ କାଳୀଚରଣ ସର୍ବଦା ଆଗଭର ଥିଲେ ।

ଉତ୍କଳ ସାହିତ୍ୟ ସମାଜର ୩୮/୩୯ ତମ ବାର୍ଷିକୋତ୍ସବର ପ୍ରଥମ ଦିବସ ତା. ୧୩. ୩. ୪୩ ଅଧିବେଶନରେ ଶେଷ ସଙ୍ଗୀତ ରୂପେ ବୈଷ୍ଣବଚରଣଙ୍କ ରଚିତ "ମୋ ଦେଶ ଦେଖା ଦେଉ ରୂପକୁ" ଓ ତା. ୧୫. ୩. ୪୩ ଅଧିବେଶନରେ ଶେଷ ସଙ୍ଗୀତ "ବାଜି ଉଠିବ ବିପଞ୍ଚି ସତେ ପୁଣି"କୁ ଗାନ କରିଥିଲେ ଓଡ଼ିଶା ଥିଏଟର୍ସର କଳାକାର ବୃନ୍ଦ । ଜାତୀୟତାବୋଧରେ ଉଦ୍ଦୀପିତ ଦୁଇଟି ଯାକ କବିତା ବୈଷ୍ଣବ-ଚରଣଙ୍କ "କବିତା କୁମୁଦ" ରେ ସ୍ଥାନ ପାଇଛି ।

ତା. ୨୮. ୩. ୪୨ ରେ ଭକ୍ତଚରଣଙ୍କ "ମନବୋଧ ଚଉତିଶା", ଦୀନକୃଷ୍ଣଙ୍କ "ଅନୁରାଗ ରତ୍ନାକର ଚଉତିଶା" ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ "ବିଦଗ୍ଧ ଚନ୍ଦ୍ରାମଣି" ରୁ "ରାଧାଧର ସଖିକର" ଗ୍ରନ୍ଥକୁ ଇଂରାଜୀରେ ଅନୁବାଦ କରି ବାଞ୍ଛାନିଧି ଚରଣ ଯେତେବେଳେ ଉତ୍କଳ ସାହିତ୍ୟ ସମାଜର ମଞ୍ଚରୁ ଉପସ୍ଥାପନା କଲେ, ସେଦିନ ସେହି ଓଡ଼ିଆ ଗୀତମାନଙ୍କୁ ଗାନ କରିଥିଲେ ନଳେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ସଭାପତିତ୍ୱ କରିଥିଲେ ଓଡ଼ିଶା କୃଷ୍ଟିର ଶିଳ୍ପୀର ପଥ ପ୍ରଦର୍ଶକ ଭିକାରୀ ଚରଣ ପଟ୍ଟନାୟକ । ଏ ଦେଶରେ ଯେଉଁ ଅପପ୍ରଚାର ଚାଲିଥିଲା ଯେ ଓଡ଼ିଶାର ପ୍ରାଚୀନ ସାହିତ୍ୟର ମର୍ଯ୍ୟାଦା ଅନୁବାଦରେ ରକ୍ଷା କରାଯାଇ ପାରିବ ନାହିଁ, ବାଞ୍ଛାନିଧି ଚରଣ ତାହାର ଅପ୍ରାମାଣିକତା ପ୍ରତିପାଦନ କରିଥିଲେ । ସେ ଦିନ ସଭାରେ ଉପସ୍ଥିତ ବ୍ୟକ୍ତିମାନେ ବାଞ୍ଛାନିଧି ଚରଣଙ୍କ ଅନୁବାଦ କଳା ଓ କାଳୀଚରଣଙ୍କ ସାଙ୍ଗୀତିକତାର ମାଧୁର୍ଯ୍ୟ ଉପଭୋଗ କରି ବିସ୍ମିତ ହୋଇ ଯାଇଥିଲେ ।

ବାଞ୍ଛାନିଧି ଚରଣ ପ୍ରତିଷ୍ଠା କରିବାକୁ ଚାହୁଁଥିଲେ ଯେ ଓଡ଼ିଶାର ରାଗରାଗିଣୀ ମାନଙ୍କ ବାହନ କରି ଆଧୁନିକ ଭାବଧାରାକୁ ସୁନ୍ଦର ଭାବରେ ପ୍ରକାଶ କରାଯାଇ ପାରେ । ତେଣୁ ଆଧୁନିକତା ଓ ପ୍ରାଚୀନ ପରମ୍ପରା ମଧ୍ୟରେ ଏମିତି କିଛି ଦୂରତିକ୍ରମ୍ୟ ବ୍ୟବଧାନ ନାହିଁ । ଆଧୁନିକ ଭାବ-ସମ୍ପଦ ଲାଗି ଓଡ଼ିଆ ସାହିତ୍ୟ-ସରଣୀରେ ଶୈଳୀଗତ ପରମ୍ପରା ଉଚ୍ଛେଦର ଆବଶ୍ୟକତା ପଡ଼ିବ ନାହିଁ । ବରଂ ସାହିତ୍ୟ ଓ ସଙ୍ଗୀତ ପରସ୍ପରର ପରିପୂରକ ହୋଇ ଚନ୍ଦ୍ରକୁ ରଜନୀ ଓ ରଜନୀକୁ ଚନ୍ଦ୍ର ଉଜ୍ଜ୍ୱଳ କଲା ପରି ଗୋଟିଏ ଅନ୍ୟଟିକୁ ଉଜ୍ଜ୍ୱଳ କରିବେ । ସଙ୍ଗୀତପ୍ରାଣ ଓଡ଼ିଆ ଜାତି ପାଖରେ ପହଞ୍ଚିବା ପାଇଁ ସଙ୍ଗୀତ ଠାରୁ ଆଉ କେଉଁ ଉପଯୁକ୍ତ ବାହନକୁ ବା ସାହିତ୍ୟ ଗ୍ରହଣ କରିପାରନ୍ତା । ସଙ୍ଗୀତ ପରିହାର କରି ଗଦ୍ୟମୟ ଶୈଳୀରେ ଆଧୁନିକ ଭାବରାଶିକୁ ପରିବେଷଣ କରିଦେଲେ, ତାହା ଓଡ଼ିଆ ଜାତି ପାଖରେ ପହଞ୍ଚିବ ନାହିଁ ଓ ଫଳରେ ଓଡ଼ିଆ ଜାତି ଆଧୁନିକ ଭାବଧାରା ଅମୃତ ଚାଖିବାରୁ ବଞ୍ଚିତ ହୋଇଯିବ । ପ୍ରାଚୀନ କବିମାନଙ୍କ ଭାବ-ସମ୍ପଦ ସଙ୍ଗୀତମୟ ଶୈଳୀରେ ପ୍ରକାଶିତ ହୋଇଛି ବୋଲି ଆଜି ସେ ସବୁ ଏ ଜାତିର ଜନସାଧାରଣଙ୍କ କଣ୍ଠହାର ହୋଇଛି । ବିଦେଶୀ ଢାଞ୍ଚାରେ ଅଧ୍ୟୟନ ପ୍ରଣାଳୀ ପ୍ରବର୍ତ୍ତନ ହେଲା ବେଳେ ଲୁହାଗଲା ଯେ ବିଦ୍ୟାଳୟମାନଙ୍କରେ ସାଙ୍ଗୀତିକ ସ୍ୱରରେ କିଛି ପଢ଼ା ଯାଇ ପାରିବ ନାହିଁ ।

ସେହିଦିନଠାରୁ ଶିକ୍ଷିତ ମହଲ କ୍ରମେ କ୍ରମେ ଓଡ଼ିଆ ଛାନ୍ଦ ଓ ରାଗରାଗିଣୀ ଠାରୁ ଦୂରେଇ ଗଲେ ଓ ତାହାର ବିଷମୟ ଫଳରେ ଜାତୀୟ ପରମ୍ପରା ଛିନ୍ନ ବିଚ୍ଛିନ୍ନ

ହୋଇଗଲା । ବିଚ୍ଛନ୍ଦଚରଣ ସେହି ଛିନ୍ନ ପରମ୍ପରାର ପୁନଃନିର୍ମାଣ ପାଇଁ ଉଦ୍ୟମ ଜାରି ରଖିଛନ୍ତି ଓ ବିଦ୍ୱତ୍ ସମାଜର ସହଯୋଗ କାମନା କରୁଛନ୍ତି ।

ତାଙ୍କର ଦ୍ୱିତୀୟ ଅଭିଳାଷ ଥିଲା ଯେ, ତାଙ୍କ ଇଂରାଜୀ ଅନୁବାଦ ଦେଖି ବିଦ୍ୱତ୍ ସମାଜ ହୃଦୟଙ୍ଗମ କରିବେ ଯେ ଓଡ଼ିଆ ପ୍ରାଚୀନ ସାହିତ୍ୟ ଅନୁବାଦ ମଧ୍ୟରେ ନିଜସ୍ୱ ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବାକୁ ସମର୍ଥ । ତେଣୁ ଅନୁବାଦ କରି ଏହି ଅପୂର୍ବ ବାଣୀ-ବିଭୂତିକୁ ଦେଶ ବିଦେଶରେ ପହଞ୍ଚାଇ ହେବ । ଦେଶ ବିଦେଶରେ ଓଡ଼ିଆ ଜାତିର ମହତ୍ତ୍ୱ ପ୍ରତିପାଦନ କରିବା ଲାଗି ଓଡ଼ିଆ ପ୍ରାଚୀନ ସାହିତ୍ୟର ଅନୁବାଦ କାର୍ଯ୍ୟକ୍ରମକୁ ସଫଳ କରିବାକୁ ପଡ଼ିବ ।

ସମକାଳୀନ ସାହିତ୍ୟିକ ଓ ସୁଧୀ ସମାଜକୁ ପ୍ରଭାବିତ କରିବା ପାଇଁ ବିଚ୍ଛନ୍ଦ-ଚରଣ ସମସ୍ତ କଷ୍ଟ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ । ଉତ୍କଳ ସାହିତ୍ୟ ସମାଜରେ ବାରବର୍ଷ ସେ ଏହି ଉଦ୍ୟମରେ କଟାଇଛନ୍ତି । ୧୯୪୧ ମସିହାରେ ସାହିତ୍ୟ ସପ୍ତାହ ଉତ୍ସବ ଉତ୍କଳ ସାହିତ୍ୟ ସମାଜରେ ପାଳିତ ହେଲା । ସାତ ଦିନ ବ୍ୟାପୀ ଏହି ଉତ୍ସବରେ ଓଡ଼ିଶା ତଥା ଓଡ଼ିଶା ବାହାରର ବହୁ ସାହିତ୍ୟିକ ଯୋଗଦାନ କରିଥିଲେ । ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାନାଭାବ ଘଟିବ ଜାଣି ବାହାର ପ୍ରାଙ୍ଗଣର ଉତ୍ତର ଭାଗରେ ସ୍ୱତନ୍ତ୍ର ମଣ୍ଡପ ନିର୍ମିତ ହୋଇଥିଲା ଓ ଦର୍ଶକମାନଙ୍କ ଦ୍ୱାରା ପ୍ରାଙ୍ଗଣ ଭରପୂର ହୋଇଯାଇଥିଲା । ଦୈନିକ ଦୁଇବେଳା ଅଧିବେଶନର କାର୍ଯ୍ୟକ୍ରମ ଚିତ୍ତାକର୍ଷକ ହୋଇଥିଲା । ସାହିତ୍ୟ, ସଙ୍ଗୀତ, ଇତିହାସ, ବିଜ୍ଞାନ ଆଦି ବିଭିନ୍ନ ବିଷୟରେ ଅନୁଷ୍ଠିତ ସ୍ୱତନ୍ତ୍ର ଅଧିବେଶନମାନଙ୍କରେ ପାଣ୍ଡିତ୍ୟପୂର୍ଣ୍ଣ ସନ୍ଦର୍ଭମାନ ଉପସ୍ଥାପନ କରାଯାଇଥିଲା । ଏହି ସୁଯୋଗରେ ଓଡ଼ିଶୀ ରାଗରାଗିଣୀର ଆଦର ଓ ପ୍ରସାର ପାଇଁ ବିଚ୍ଛନ୍ଦଚରଣ ବିଶେଷ ଧ୍ୟାନ ଦେଇଥିଲେ । ଏହି ସାହିତ୍ୟ ସପ୍ତାହର ସଫଳତା ବିଷୟ ଉଲ୍ଲେଖ କରି ବାର୍ଷିକ ସମ୍ପାଦକୀୟ ବିବରଣୀରେ ବିଚ୍ଛନ୍ଦଚରଣ ଲେଖିଛନ୍ତି, "ଏହା ଏକା ଉତ୍କଳ-ସାହିତ୍ୟ-ସମାଜର ଇତିହାସରେ କାହିଁକି, ଉତ୍କଳର ଇତିହାସରେ ସୁଦ୍ଧା ସ୍ମରଣୀୟ ଘଟଣା ।" ସାହିତ୍ୟ ସାଧନା ନିମନ୍ତେ ସମଗ୍ର ଜାତିବ୍ୟାପୀ ଉନ୍ମାଦନା ସୃଷ୍ଟି କରିବାରେ ଉତ୍କଳ-ସାହିତ୍ୟ-ସମାଜ କି ପରିମାଣରେ କ୍ଷମ, ତାହା ସେ ସମୟରେ ସ୍ପଷ୍ଟ ଉପଲବ୍ଧ ହୋଇଥିଲା ।"(୨୭) ୧୯୪୧ ମସିହାରେ ବିଚ୍ଛନ୍ଦଚରଣ ଉତ୍କଳ ସାହିତ୍ୟ ସମାଜର ସହକାରୀ ସମ୍ପାଦକ ଓ ୧୯୪୨-୪୩ ଓ ୧୯୪୩-୪୪ ରେ ସମ୍ପାଦକ ଭାବରେ କାର୍ଯ୍ୟ କରୁଥିଲେ । ୧୯୪୪ ମସିହା ଶେଷ ଭାଗକୁ ଉତ୍କଳ ସାହିତ୍ୟ ସମାଜରୁ ତହିଁର ଲାଇବ୍ରେରୀକୁ ଉଠାଇ ନେବାର ଉଦ୍ୟମ ହେବାରୁ ସେ ଉତ୍କଳ ସାହିତ୍ୟ ସମାଜରୁ ଇସ୍ତଫା ଦେଇ ଅଲଗା ହୋଇଗଲେ ।" (୨୮)

କିନ୍ତୁ ସେତେବେଳକୁ ୧୯୪୩ ମସିହାରୁ ସେ "ଉତ୍କଳ-ଛାତ୍ର-ସାହିତ୍ୟ-ସମାଜ" ନାମକ ଅନୁଷ୍ଠାନ ଗଢ଼ି ସାରିଥାନ୍ତି ଓ ବିଭିନ୍ନ ବିଦ୍ୟାଳୟର ସାହିତ୍ୟ ସାଧକ ଛାତ୍ରମାନେ ଶ୍ରୀରାମଚନ୍ଦ୍ର ଭବନରେ ଏକତ୍ର ହୋଇ ତାଙ୍କଠାରୁ ନିର୍ଦ୍ଦେଶ ଗ୍ରହଣ କରୁଥାନ୍ତି ।

୧୯୩୨ ରୁ ୧୯୪୪ ଏହି ବାରବର୍ଷ ମଧ୍ୟରେ ତାଙ୍କ ଜୀବନର ଅନେକ ଅବିସ୍ମରଣୀୟ ଘଟଣା ଘଟିଗଲା । ୧୯୩୪ ମସିହାରେ ତାଙ୍କ ମାତା ରାଧାଦେବୀ ଓ ୧୯୩୬ ମସିହାରେ ପିତା ଗୋଲକକୃଷ୍ଣ ଦେହତ୍ୟାଗ କଲେ ।

୧୯୩୮ ମସିହାରେ ପୁରୀ ଜିଲ୍ଲା ସୁଆଣ୍ଡିର ଗ୍ରାମ ନିବାସୀ ଜଗତବଲ୍ଲଭ ଦାସଙ୍କ ସାନ ଭଉଣୀ ଶ୍ରୀମତୀ ନେତ୍ରମଣି ଦେବୀଙ୍କ ସହିତ ବିଚ୍ଛନ୍ଦଚରଣଙ୍କର ଶୁଭ ପରିଣୟ ସମ୍ପନ୍ନ ହେଲା । ଶ୍ରୀମତୀ ନେତ୍ରମଣି ଦେବୀଙ୍କୁ ବିଚ୍ଛନ୍ଦଚରଣ ତାଙ୍କ "ଜୀବନ-ଶ୍ମଶାନର-ତୁଳସୀ" ବୋଲି ଅଭିହିତ କରିଥାନ୍ତି । ପଲ୍ଲୀ ବାଳିକା ସୁଲଭ ସରଳତା, ନିଷ୍କପଟତା, ଅମାୟିକତା ଆଦି ଦୁର୍ଲଭ ଗୁଣରେ ଶ୍ରୀମତୀ ନେତ୍ରମଣି ଦେବୀ ଆଜୀବନ ଭୂଷିତା ହୋଇ ରହିଛନ୍ତି । ତାଙ୍କ ଭଗବଦ୍ଭକ୍ତି, ପତିପରାୟଣତା, ସନ୍ତାନ ବାତ୍ସଲ୍ୟ ଅସାଧାରଣ ଥିଲା । ଏପରି କି ବିଚ୍ଛନ୍ଦଚରଣଙ୍କ ପ୍ରିୟ ଶିଷ୍ୟ ମଣ୍ଡଳୀଙ୍କୁ ସେ ପୁତ୍ର ପରି ସ୍ନେହ କରୁଥିଲେ । ତାଙ୍କ ବିଷୟରେ ନିଜ ପ୍ରଥମ ଅନୁଭୂତି ବର୍ଣ୍ଣନା କରି ବିଚ୍ଛନ୍ଦଚରଣଙ୍କ ଅନ୍ୟତମ ପ୍ରିୟ ଶିଷ୍ୟ ଶ୍ରୀ ବେଣୁଧର ସ୍ୱାଇଁ ଲେଖିଛନ୍ତି, "ଦେଖିଲି ଗୁରୁଦେବଙ୍କ ଅପେକ୍ଷା ତାଙ୍କ ସହଧର୍ମିଣୀ ଅତି ସ୍ନେହଶୀଳା । କଳିଙ୍ଗ-ଭାରତୀର ସବୁ ପିଲା ସତେ ଯେପରି ତାଙ୍କ ପିଲା । ସେ କାହାକୁ ଖାଇବାକୁ ନଦେଇ ଛାଡ଼ନ୍ତି ନାହିଁ । ତାଙ୍କ କଥା ଅମୃତ । ଖାଦ୍ୟଠାରୁ ଅଧିକ ତାଙ୍କ ସ୍ନେହ ଯେ ପାଇଛି ସେ ତାହା କେବେ ହେଲେ ଭୁଲିବ ନାହିଁ ।" କଳିଙ୍ଗଭାରତୀର ସଭ୍ୟବୃନ୍ଦ ବିଚ୍ଛନ୍ଦଚରଣଙ୍କୁ "ଗୁରୁଦେବ" ଓ ତାଙ୍କ ଧର୍ମପତ୍ନୀଙ୍କୁ "ମାଉସୀ" ବୋଲି ସମ୍ବୋଧନ କରୁଥିଲେ ।

୧୯୪୧ ମସିହାରେ ବିଚ୍ଛନ୍ଦଚରଣ ବି. ଏଲ୍. (ଆଇନ) ରେ ଉତ୍ତୀର୍ଣ୍ଣ ହୋଇ କଟକ ଜଜ୍‌କୋର୍ଟରେ କିଛିକାଳ ଓକିଲାତି କରୁଥିଲେ । ୧୯୪୨ ମସିହାରେ ଆଡ଼ିସିନାଲ୍ ଓଡ଼ିଆ ଟ୍ରାନ୍‌ସଲେଟର ଭାବରେ ସରକାରୀ କାର୍ଯ୍ୟରେ ଯୋଗ ଦେଇ ପରେ ରାଇଟର ଟ୍ରାନ୍‌ସ୍‌ଲେଟର ପଦରେ ଅବସ୍ଥାପିତ ହୋଇଥିଲେ । ଓଡ଼ିଆରୁ ଇଂରାଜୀ ଓ ଇଂରାଜୀରୁ ଓଡ଼ିଆ ଅନୁବାଦ କରି ପାରିବାର ଯେଉଁ ଅପୂର୍ବ ଦକ୍ଷତା ତାଙ୍କ ସାହିତ୍ୟ ଓ ଦେଶସେବାରେ ଆୟୁଧ ରୂପେ କାର୍ଯ୍ୟ କରୁଥିଲା, ଏବେ ତାହା ତାଙ୍କୁ

ଅନୁଷ୍ଠାନରେ ସହାୟକତା କଲା । ଜଣେ ଶାସନିକ ଅକ୍ଷମ ବ୍ୟକ୍ତିଙ୍କ ବୟସୋତ୍ତୀର୍ଣ୍ଣ ଅବସ୍ଥାରେ ସରକାରୀ ଉଚ୍ଚପାହ୍ୟା ଚାକରୀ ପାଇବା ହୁଏତ ସମ୍ଭବ ହୋଇନଥାନ୍ତା, କିନ୍ତୁ ବିଚ୍ଛନ୍ଦଚରଣଙ୍କ ସର୍ବଜନବିଦିତ ପ୍ରତିଭା ତାଙ୍କ ପଥରୁ ସେ ପ୍ରତ୍ୟବାୟ ଘୁଞ୍ଚାଇଦେଲା । ଏହି ସରକାରୀ ଚାକରୀ ନିର୍ବାହ କରୁଥିଲାବେଳେ ସେ ପ୍ରଚାର ବିଭାଗ ତରଫରୁ ପ୍ରକାଶିତ ଓଡ଼ିଆ ଭାଷାରେ "ଉତ୍କଳ ପ୍ରସଙ୍ଗ" ଓ ଇଂରାଜୀ ଭାଷାରେ "ଓଡ଼ିଶା ରିଭ୍ୟୁ" ର ସମ୍ପାଦକ ଥିଲେ । କହିବା ନିଷ୍ପ୍ରୟୋଜନ, ତାଙ୍କ ଯୋଗୁଁ ଦୁଇଟି ଯାକ ପତ୍ରିକାର ନବକଳେବର ଘଟିଲା ଓ ଦୁଇଟି ଯାକ ସାହିତ୍ୟ ପତ୍ରିକା ଭାବରେ ମର୍ଯ୍ୟାଦା ଅର୍ଜନ କଲେ । ପ୍ରାଚୀନ ଓଡ଼ିଆ କବିମାନଙ୍କ କବିତାର ଇଂରାଜୀ ଅନୁବାଦ ଏହି ପତ୍ରିକାରେ ପ୍ରକାଶ କରି ବିଚ୍ଛନ୍ଦଚରଣ ଜଣେ ବିଶେଷ କ୍ଷମତାପନ୍ନ ଉପରିସ୍ଥ କର୍ମଚାରୀଙ୍କ ବିରାଗ ଭାଜନ ହୋଇଥିଲେ । ଉପରିସ୍ଥ କର୍ମଚାରୀଙ୍କ ଧାରଣା ଥିଲା ଯେ ପ୍ରାଚୀନ ସାହିତ୍ୟ ଆଧୁନିକ ଶିକ୍ଷିତ ସମ୍ପ୍ରଦାୟ ରୁଚି ଲାଗି ଅଯୋଗ୍ୟ । ପୁଣି, ଏ ପତ୍ରିକା ସାହିତ୍ୟ ଚର୍ଚ୍ଚା ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା ସରକାରଙ୍କ ଯୋଜନା ଓ ଉନ୍ନୟନ କାର୍ଯ୍ୟସୂଚୀର ବାର୍ତ୍ତାବହ ପତ୍ରିକା । ସରକାରଙ୍କଠାରୁ ପ୍ରକାଶ୍ୟ ଅନୁମତି ନ ନେଇ ଏଥିରେ ଅନୁବାଦ ଛାପିବା ଅତ୍ୟନ୍ତ ଗର୍ହିତ ବ୍ୟାପାର । ବିଚ୍ଛନ୍ଦଚରଣଙ୍କ ଅନୁବାଦର ସାହିତ୍ୟିକ ମୂଲ୍ୟ ପ୍ରତି ମଧ୍ୟ ତାହିଁରେ କଟାକ୍ଷ ଥିଲା । ସମସ୍ତେ ଉପଦେଶ ଦେଲେ "ବିଚ୍ଛନ୍ଦଚରଣ ମୁଣ୍ଡ ନୁଆଁଇ ଦିଅନ୍ତୁ" । କିନ୍ତୁ ବିଚ୍ଛନ୍ଦଚରଣ ଆକ୍ଷେପମାନଙ୍କ ବିରୁଦ୍ଧରେ କଟୁ ମନ୍ତବ୍ୟ ସହିତ ମସୀଯୁଦ୍ଧ ଆରମ୍ଭ କରିଦେଲେ । ଶେଷରେ ଚାକରୀ ଯିବା କଥା ଉଠିଲା । ତଥାପି ବିଚ୍ଛନ୍ଦଚରଣ କ୍ଷମା ପ୍ରାର୍ଥନା କଲେ ନାହିଁ । "ଶିର୍ ଦେଗେଁ, ସାର୍ ନେହିଁ ଦେଗେଁ"— ଏହି ମନ୍ତ୍ରରେ ଉଦ୍‌ବୋଧିତ ବିଚ୍ଛନ୍ଦଚରଣ ନିର୍ଭୀକତାର ସହିତ ନିଜ ସିଦ୍ଧାନ୍ତର ଯଥାର୍ଥତା ପ୍ରତିପାଦନରେ ଅଟଳ ରହିଲେ । ସୁଖର କଥା, ଜଣେ ପଦାଧିକାରୀ ଗୁଣମୁଗ୍‌ଧ ବନ୍ଧୁଙ୍କ ହସ୍ତକ୍ଷେପ ଫଳରେ ଅବସ୍ଥା ଶାନ୍ତ ପଡ଼ିଲା । ବିଚ୍ଛନ୍ଦଚରଣ ବିପଦ ମୁକ୍ତ ହେଲେ ।



୭

# କଳିଙ୍ଗ ଭାରତୀ ଓ
# ଉତ୍କଳ ଛାତ୍ର ସାହିତ୍ୟ ସମାଜ

ବିଚ୍ଛନ୍ଦଚରଣ ଅନୁଭବ କରୁଥିଲେ ଯେ ମହାଶକ୍ତିଧର ଓଡ଼ିଆ ଜାତି ଆଜି ଆତ୍ମବିସ୍ମୃତ ହୋଇ ଶୋଇ ପଡ଼ିଛି । ଏହି ଗାଢ଼ ନିଦ୍ରାରୁ ତାକୁ ଜାଗ୍ରତ କରାଇବାକୁ ପଡ଼ିବ । ଆତ୍ମ-ସଚେତନ ନହେବା ପର୍ଯ୍ୟନ୍ତ ତାହାର ନିଦ୍ରା ଭାଙ୍ଗିବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଜାତି ନିଜକୁ ନିଜେ ନ ଚିହ୍ନିଛି, ନିଜର ସାଂସ୍କୃତିକ ମୌଳିକତା ପ୍ରତି ସ୍ୱାଭିମାନ ପୋଷଣ ନକରିଛି, ନିଜ ଘର ଧନର ମର୍ଯ୍ୟାଦା ପ୍ରତି ଅବହିତ ନହୋଇଛି, ତାକୁ ଆତ୍ମବିସ୍ମୃତିର ତାମସୀ ନିଦ୍ରା ଘାରି ରହିଥିବ । ଅପବାଦ ଓ ଅପପ୍ରଚାରର ଶିକାର ହୋଇ ଏହି କିଶତ୍‌କର୍ମୀ ଜାତି ଆତ୍ମଗ୍ଲାନି ପଙ୍କରେ ବୁଡ଼ି ଯାଇଛି; ନିଜ ପ୍ରତି ତାହାର ଖର୍ବୀକୃତ ଧାରଣା ଉପୁଜିଛି ଓ ସେ ଆତ୍ମବିଶ୍ୱାସ ହରାଇ ବସିଛି । ବିଷାଦ ଓ ନୈରାଶ୍ୟବାଦ ବିଷରେ ଜର୍ଜରିତ ହୋଇ ଏ ଜାତି ମୁମୂର୍ଷୁ ଜୀବନ ଯାପନ କରୁଛି । ତାହାର ଆତ୍ମ-ପ୍ରତ୍ୟୟ ଫେରାଇ ଆଣିବାକୁ ହେବ; ତାହାକୁ ନିଜ ପରମ୍ପରା ସହିତ ସଂଯୋଜିତ କରି ଉଜ୍ଜୀବିତ କରିବାକୁ ପଡ଼ିବ । କେବଳ ଶିକ୍ଷିତ ସଂପ୍ରଦାୟ ମଧ୍ୟରେ ନୁହେଁ, ସମଗ୍ର ଓଡ଼ିଆ ଜାତିର ଚେତନାରେ ବ୍ୟାପକ ଜାଗରଣ ସୃଷ୍ଟି କରିବାକୁ ହେବ । ପୁରପଲ୍ଲୀରେ ମଉଳି ଯାଉଥିବା ଶିଳ୍ପୀ, କାରିଗର, ସ୍ଥପତିଙ୍କ କଳା ନୈପୁଣ୍ୟକୁ ସଂଜୀବିତ ନକରି ପାରିଲେ ଓଡ଼ିଆ ଜାତିର ଦୁର୍ଲ୍ଲଭ ସାମର୍ଥ୍ୟ କ୍ରମେ ହୀନପ୍ରଭ ହୋଇ ଅସ୍ତ ହୋଇଯିବ । ମନରେ ଆଉ ବିଶ୍ୱାସ ଆସିବ ନାହିଁ ଯେ ଆମ ଦେଶର ଶିଳ୍ପୀମାନେ ଆମ କଳା-ସମ୍ପଦକୁ ନିର୍ମାଣ କରିଛନ୍ତି । ବୟନଶିଳ୍ପ, ତାରକସି କାମଠାରୁ ଆରମ୍ଭ କରି ଖୋଷ୍ଟିପତା ଲେଖିବା, ଖଇରରେ ଅଳଙ୍କାର ତିଆରି କରିବା ଆଦି ଲୋପୋନ୍ମୁଖ ଅଶେଷ କଳାର ଆଧାର ଏହି ଓଡ଼ିଆ ଜାତିର ପରମ୍ପରାକୁ ବଞ୍ଚାଇ ରଖିବା ପାଇଁ ଅତନ୍ଦ୍ରିତ ଉଦ୍ୟମ କରିବାକୁ ହେବ । ଏଥିପାଇଁ ଆତ୍ମୋତ୍ସର୍ଗ ବ୍ରତରେ ଦୀକ୍ଷିତ ପ୍ରତିଭାବାନ ଯୁବଗୋଷ୍ଠୀଙ୍କୁ ସଙ୍ଗଠିତ ହେବାକୁ ପଡ଼ିବ । ବିଚ୍ଛନ୍ଦଚରଣ ଓଡ଼ିଶାର ସାମଗ୍ରିକ ଚେତନାରେ ନବଜାଗରଣ ଲାଗି ଏହି ସ୍ୱପ୍ନ ଦେଖୁଥିଲେ । ମୁମୂର୍ଷୁ ଓଡ଼ିଆ ସଂସ୍କୃତିର ଉଦ୍ଧାର କଳ୍ପେ ଆତ୍ମବଳି ଦେବାଲାଗି ପ୍ରସ୍ତୁତ ସମର୍ଥ କର୍ମୀମାନଙ୍କୁ ଉଦ୍‌ବୋଧିତ କରିବା ତାଙ୍କର ପ୍ରଥମ କର୍ମ ଥିଲା ।

"କୋଣାର୍କ ତା ପ୍ରାପ୍ୟ ପୂଜା ପାଉନାହିଁ, କବିସମ୍ରାଟଙ୍କ ସ୍ମୃତିରକ୍ଷା ପାଇଁ କିଛି ହେଉନାହିଁ । X X ଜୀବନର ଘୂର୍ଣ୍ଣିକ ଦ୍ୱାରା ଏ ସୁପ୍ତ ଜାତିର ବିବେକକୁ ଜାଗ୍ରତ କରିବାକୁ ହେବ ।" (୩୦)

ସେ କହୁଥିଲେ, ଯେଉଁମାନଙ୍କ ହୃଦୟ ନୈରାଶ୍ୟରେ ପୂର୍ଣ୍ଣ, ସେମାନଙ୍କୁ ଘୋରଅନ୍ଧକାର ଘେରେ । କିନ୍ତୁ ଯେଉଁମାନେ ଯୁଗପ୍ରବର୍ତ୍ତକ ସେମାନେ ନିଜେ ଆଲୋକର ଅବାରିତ ଉତ୍ସ । ସେମାନଙ୍କ ଆବିର୍ଭାବରେ ଅନ୍ଧକାର ପଳାୟନ କରେ । ନୈରାଶ୍ୟ କଅଣ, ଅନ୍ଧାର କଅଣ, ସେମାନେ ଜାଣନ୍ତି ନାହିଁ । ସେମାନଙ୍କ ଦ୍ୱାରା ଉଦ୍ଭାସିତ ପଥରେ ଜଗତର ଲୋକେ ଗତି କରନ୍ତି । ଯୁଗ ପ୍ରବର୍ତ୍ତକମାନେ ସୂର୍ଯ୍ୟଙ୍କ ପରି ଜଗତର ନୟନ । ସେମାନଙ୍କ ବିନା ଜଗତ ଅନାଥ ।" (୩୧) ଯୁଗ ପ୍ରବର୍ତ୍ତକମାନଙ୍କ ଜୀବନାଦର୍ଶକୁ ଅନୁସରଣ କରି ନିଜ ଲକ୍ଷ୍ୟ ପଥରେ ଅଗ୍ରଗତି କରିବା ପାଇଁ ବିଚ୍ଛନ୍ଦଚରଣ ଯୁବକର୍ମୀ ଗୋଷ୍ଠୀକୁ ଉଦ୍‌ବୋଧିତ କରୁଥିଲେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ପ୍ରଚଣ୍ଡ ବାତ୍ୟା ବହୁଥିଲା ବେଳେ "ଯୁଗ ପ୍ରବର୍ତ୍ତକମାନଙ୍କ ଜୀବନାଦର୍ଶ"ର ବ୍ୟାଖ୍ୟା ଲାଗି କୌଣସି ବାଚକ ପ୍ରୟୋଜନ ପଡ଼ୁନଥିଲା । ଏହି ଜୀବନାଦର୍ଶକୁ ବରଣ କରି ଦେଶର ଗଳିକନ୍ଦିରେ ନିଃସ୍ୱାର୍ଥପର କର୍ମୀମାନେ ଘୂରିବୁଲି ବିଚରଣ କରୁଥିଲେ । ବୋଧ ହେଉଥିଲା, ଯେପରି ସମଗ୍ର ଦେଶରେ ସ୍ୱାର୍ଥାହୁତି ମହା-ଯଜ୍ଞର ବିଶ୍ୱରୂପ ପ୍ରକଟିତ ହୋଇଛି । ୧୯୪୨ ମସିହାରେ ଇଂରେଜ ସରକାରଙ୍କୁ "ଭାରତ ଛାଡ଼" ଡାକରା ଦେଇଥାନ୍ତି ମହାତ୍ମାଗାନ୍ଧୀ । ଜନଜୀବନର ପ୍ରତ୍ୟେକ କ୍ଷେତ୍ରରେ ବିଦେଶୀ ବର୍ଜ୍ଜନର ଆହ୍ୱାନ ଅନୁରଣିତ ହେଉଥାଏ । ସେତିକବେଳେ ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରୁ ସକଳ ପ୍ରକାର ବିଜାତୀୟତାର ସମୂଳ ଉତ୍ପାଟନ ପାଇଁ ବିଚ୍ଛନ୍ଦଚରଣ ସାଂସ୍କୃତିକ ସଂଗ୍ରାମ ଘୋଷଣା କରିଥାନ୍ତି । ଜାତୀୟ ସ୍ରୋତ ସହିତ ସାମିଲ ହୋଇ ତାଙ୍କ ଆହ୍ୱାନ ଯୁବ ସମ୍ପ୍ରଦାୟକୁ ଆନ୍ଦୋଳିତ କରିଦେଲା । ପ୍ରଥମେ କଟକରେ ବିଭିନ୍ନ ଶିକ୍ଷାନୁଷ୍ଠାନର ଛାତ୍ରମାନଙ୍କୁ ଓ ପରେ ଓଡ଼ିଶାର ବିଭିନ୍ନାଞ୍ଚଳର ଯୁବଗୋଷ୍ଠୀକୁ ବିଚ୍ଛନ୍ଦଚରଣଙ୍କ ଆହ୍ୱାନ-ତରଙ୍ଗ ନିବିଡ଼ ଭାବରେ ସ୍ପର୍ଶ କଲା । ଅସ୍ତୁମାରମ୍ଭ ହେଲା କଳିଙ୍ଗ ଭାରତୀ ଓ ଉତ୍କଳ ଛାତ୍ର ସାହିତ୍ୟ ସମାଜର ପ୍ରତିଷ୍ଠା । ତାହାର ପ୍ରତିଷ୍ଠାତା ସଭାପତି ଭାବରେ ରହିଲେ ବିଚ୍ଛନ୍ଦଚରଣ । କଳିଙ୍ଗ ଭାରତୀ ଆଦର୍ଶରେ ଅନୁପ୍ରାଣିତ ଗୋଷ୍ଠୀ କ୍ରମଶଃ ସଙ୍ଗଠିତ ହେଲା ଓ ସେହି ଗୋଷ୍ଠୀ ବିଚ୍ଛନ୍ଦଚରଣଙ୍କୁ "ଗୁରୁଦେବ" ବୋଲି ସମ୍ବୋଧନ କରୁଥିଲେ । ଗୁରୁ ଶିଷ୍ୟ ପରମ୍ପରାର ଉଜ୍ଜ୍ୱଳ ମାର୍ଗ ଅନୁସୃତ ହେଲା । ଶିଷ୍ୟମଣ୍ଡଳୀ ନିଜକୁ କଳିଙ୍ଗ ଭାରତୀ ପରିବାରର ଅନ୍ତର୍ଭୁକ୍ତ ସଦସ୍ୟ ବୋଲି ମଣୁଥିଲେ, ତେଣୁ ସେମାନଙ୍କ ମଧ୍ୟରେ ଆତ୍ମିକ ଭ୍ରାତୃଭାବ ଆଜୀବନ ପ୍ରତିଷ୍ଠିତ ହୋଇ ରହିଲେ । ନିଜ ପରିବାରର ସ୍ୱାର୍ଥକୁ

ଏକ କ୍ଷୁଦ୍ର ସ୍ୱାର୍ଥ ବୋଲି ସେମାନେ ମଣୁଥିଲେ । ପ୍ରୟୋଜନ ସନ୍ଧାନେ କଳିଙ୍ଗ ଭାରତୀ ପରିବାରର ବୃହତ୍ତର ସ୍ୱାର୍ଥ ଲାଗି ନିଜ ପରିବାରର କ୍ଷୁଦ୍ର ସ୍ୱାର୍ଥକୁ ଜଳାଞ୍ଜଳି ଦେବା ପାଇଁ ସେମାନେ ଅକୁଣ୍ଠ ଆଗ୍ରହ ପ୍ରକାଶ କରୁଥିଲେ । ଫଳରେ ବଲ୍ଲଭଚରଣଙ୍କ ଦୃଢ଼ତାର ପ୍ରଭାବକୁ ଉପେକ୍ଷା କରିବା କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀର ପିତାମାତା-ମାନଙ୍କ ପକ୍ଷରେ ମଧ୍ୟ ସହଜସାଧ୍ୟ ନଥିଲା । କଳିଙ୍ଗ ଭାରତୀ ପରିବାରଭୁକ୍ତ ଯୁବଗୋଷ୍ଠୀ ଉଚ୍ଚସ୍ୱରରେ ପରସ୍ପରକୁ "ଜୟ ମା କଳିଙ୍ଗ ଭାରତୀ" ଉଚ୍ଚାରଣ କରି ଅଭିବାଦନ କରିବା ଅପରିହାର୍ଯ୍ୟ ବିଧି ପ୍ରଚଳିତ ଥିଲା । କଳିଙ୍ଗଭାରତୀଙ୍କର ଜୟ ହେଉ, କଳିଙ୍ଗ ଭାରତୀ ଅନୁଷ୍ଠାନର ଜୟ ହେଉ, କଳିଙ୍ଗ ଭାରତୀ ଆନ୍ଦୋଳନର ଜୟ ହେଉ— ଏହା ହିଁ ଥିଲା ଏହି ସମ୍ବୋଧନର ଅନ୍ତର୍ନିହିତ ଗୂଢ଼ାର୍ଥ । ପରସ୍ପରକୁ ପତ୍ର ଲେଖିଲା ବେଳେ ପତ୍ରର ଶୀର୍ଷଦେଶରେ "ଜୟ ମା କଳିଙ୍ଗ ଭାରତୀ" ବୋଲି ଲେଖା ଯାଉଥିଲା । ବହୁ ବର୍ଷ ଅତୀତ ହୋଇ ଯାଇଥିଲେ ହେଁ ପରିଣତ ବୟସରେ ପଦାର୍ପଣ କରି ମଧ୍ୟ ସାଧକଗୋଷ୍ଠୀ "ଏହି" ଆଚରଣକୁ ବଜାୟ ରଖିଛନ୍ତି ।

ବଲ୍ଲଭଚରଣଙ୍କ ସ୍ନେହମୟୀ ଧର୍ମପତ୍ନୀ ନେହମଣି ଦେବୀଙ୍କ ଅପାରୋତ୍ର ଅମାୟିକ ବାତ୍ସଲ୍ୟ ଲାଭ କରି ସାଧକ ଗୋଷ୍ଠୀ ତାଙ୍କ ଗଭୀର ସମ୍ମାନବୋଧର ଦ୍ୟୋତକ "ମାଉସୀ" ବୋଲି ସମ୍ବୋଧନ କରୁଥିଲେ । ପିଲାଏ ଘରକୁ ଆସିବା ଡେରି କଲେ ଜନନୀ ଯେପରି ଦାଣ୍ଡବାଡ଼ି ହୁଏ, କଳିଙ୍ଗ ଭାରତୀ ସାଧକଗୋଷ୍ଠୀମାନଙ୍କ ଅନୁପସ୍ଥିତି ପାଇଁ ନେହମଣି ଦେବୀ ସେହିଭଳି ବ୍ୟାକୁଳିତା ହେଉଥିଲେ । କଳିଙ୍ଗ ଭାରତୀ ପରିବାର-ବୋଧକୁ ଗଢ଼ି ତୋଳିବା ଲାଗି ନେହମଣି ଦେବୀଙ୍କର ଅତୁଳନୀୟ ଅବଦାନ ରହିଛି । ସେ ନିଜକୁ ପରଦା ଅନ୍ତରାଳରେ ତଥା ବୈଷ୍ଣବୀୟ ନିଗଡ଼ମାନଙ୍କରେ ସବୁବେଳେ ଘୋଡ଼ାଇ ରଖୁଥିଲେ । କିନ୍ତୁ ଭୂଗର୍ଭର ଅନ୍ତରାଳ ଅବସ୍ଥା ଉପୁଷ୍ଟକୁ ନିୟନ୍ତ୍ରିତ କରୁଥିଲା । ସେ କୌଣସି ସାଧାରଣ ଅଧିବେଶନରେ ଯୋଗ ଦେଉ ନଥିଲେ କିମ୍ବା ସାଧାରଣ ସ୍ଥାନମାନଙ୍କରେ ଦେଖାଯାଉ ନଥିଲେ । ସେ ନିଜକୁ ସ୍ୱେଚ୍ଛାକୃତ ସଂପୂର୍ଣ୍ଣ ଆବରଣ ମଧ୍ୟରେ ରଖି ସାରା ଜୀବନଯାପନ କରିଛନ୍ତି । ତାହାଙ୍କୁ ଜଣେ ଅସୂର୍ଯ୍ୟମ୍ପଶ୍ୟା ରମଣୀ ବୋଲି କୁହାଯାଇ ପାରେ ।

କଳିଙ୍ଗ ଭାରତୀ ଅନୁଷ୍ଠାନ ବିଷୟରେ ୧୯୬୬ ମସିହାରେ ଏକ ସାମ୍ବାଦିକ ସମ୍ମିଳନୀରେ ବଲ୍ଲଭଚରଣ କହିଛନ୍ତି, "ପ୍ରଥମ ଅବସ୍ଥାରେ କଳିଙ୍ଗ ଭାରତୀର ମୁଁ ଏକମାତ୍ର ସଭ୍ୟ ଥିଲି ।" ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ହେଉଛି କଳିଙ୍ଗଭାରତୀର "ପରିପୂରକ ଓ ପରିପୋଷକ ଅନୁଷ୍ଠାନ" ଓ "ଅଙ୍ଗୀଭୂତ ସଂସ୍ଥା" । ଦୁଇଟିଯାକ ଅନୁଷ୍ଠାନ 'ଅଙ୍ଗାଙ୍ଗୀ ଭାବରେ ଜଡ଼ିତ' । ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜରେ

ନବବର୍ତ୍ତିନୀ ଭାବରେ ଯେଉଁମାନେ ଅନ୍ୟୂନ ପାଞ୍ଚବର୍ଷ ସାଧନା କରି ଶିକ୍ଷିତ ଉତ୍ତ-ବର୍ତ୍ତୀ ହୋଇ ଅଛନ୍ତି, ସେମାନଙ୍କୁ କଳିଙ୍ଗ ଭାରତୀ ପ୍ରତିଷ୍ଠାନର ସାଧକ ସଭ୍ୟ ପଦରେ ଭୂଷିତ କରାଯାଇଅଛି । ମୋ ସହିତ ଏବେ ସେହିମାନେ କଳିଙ୍ଗ ଭାରତୀ ପ୍ରତିଷ୍ଠାନ ଗଠନ କରିଅଛନ୍ତି ।"

କଳିଙ୍ଗ ଭାରତୀ ଓ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ପ୍ରତିଷ୍ଠାତା ସଭାପତି ଶଚ୍ଚିଦାନନ୍ଦ ଚରଣ ତା ୨୨-୪-୫୫ରେ ଆଡ୍ଭାନ୍ସ ସାମ୍ବାଦିକ ସମ୍ମିଳନୀରେ କଳିଙ୍ଗ ଭାରତୀର ସଂକ୍ଷିପ୍ତ ପରିଚୟ ପ୍ରଦାନ କରି କହିଥିଲେ —"ମୁଁ ଉତ୍କଳ ସାହିତ୍ୟ ସମାଜରୁ ବିଦାୟ ନେବାରୁ ସେତେବେଳେ ସ୍କୁଲରେ ଶିକ୍ଷାର୍ଥୀ ଶ୍ରୀମାନ୍ ହୃଦାନନ୍ଦ ରାୟ, ଶ୍ରୀମାନ ନରୋତ୍ତମ ମୋହନ ପଣ୍ଡା, ଶ୍ରୀମାନ୍ ଗୋପବନ୍ଧୁ ରଥ, ଶ୍ରୀମାନ୍ ବିଜୟ କୁମାର କାନୁନଗୋ, ଶ୍ରୀମାନ୍ ଅନ୍ନଦା ଚରଣ ଦାସ ଶ୍ରୀମାନ୍ ରଜତ କୁମାର କର, ଶ୍ରୀମାନ୍ ପ୍ରମୋଦ ପଣ୍ଡା ଓ ସ୍ୱର୍ଗତ ବିନାୟକ ଚୌଧୁରୀ ପ୍ରମୁଖ ପ୍ରାୟ ଶତ ସଂଖ୍ୟକ ଗ୍ରନ୍ଥ ଉଗରପଡ଼ାର ମୋ ବାସଭବନରେ ୧୯୪୪ ମସିହାରେ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ଗଠନ କଲେ । "ଶ୍ରୀ ହୃଦାନନ୍ଦ ରାୟ ସଂଗଠକ ସମ୍ପାଦକ ହୋଇ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ଶାଖାମାନ ସ୍ଥାପନ କଲେ । ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ପରିସର ବ୍ୟାପିବାରେ ଲାଗିଲା ।" (୩୩)

କଳିଙ୍ଗ ଭାରତୀ ଆଦର୍ଶରେ ଅନୁପ୍ରାଣିତ ହୋଇ ଶଚ୍ଚିଦାନନ୍ଦଙ୍କ ଅନୁରକ୍ତ ଶିଷ୍ୟମଣ୍ଡଳୀ ୧୯୪୩ ମସିହାରୁ ତାଙ୍କ ପ୍ରଦର୍ଶିତ ମାର୍ଗରେ ସାଧନା କରୁଥିଲେ ହେଁ ୧୯୪୪ ମସିହା ମେ ମାସ ୧୬ ତାରିଖରେ ଆନୁଷ୍ଠାନିକ ଭାବରେ ଉତ୍କଳ ଗ୍ରନ୍ଥ ସାହିତ୍ୟ ସାହିତ୍ୟ ସମାଜକୁ ସଂଗଠିତ କଲେ । ଏହି ଆନୁଷ୍ଠାନିକ ଜନ୍ମଦିବସକୁ ସ୍ମରଣୀୟ କରିବା ପାଇଁ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ଓଡ଼ିଶାର ସର୍ବପ୍ରଥମ ଭଞ୍ଜ-ଜୟନ୍ତୀ ପାଳନ କଲା । ସେହି ଦିବସକୁ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ତଥା କଳିଙ୍ଗ ଭାରତୀର ଆବିର୍ଭାବ ଦିବସ ରୂପେ ଗ୍ରହଣ କରାଯାଉଛି ।" (୩୪) ସେହିଦିନଠାରୁ କଳିଙ୍ଗଭାରତୀ ଭଞ୍ଜଜୟନ୍ତୀ ବର୍ଷକୁ ବର୍ଷ ଅଖଣ୍ଡିତ ଭାବରେ ମେ ମାସ ୧୬ ତାରିଖରେ ଯଥାସମାରୋହରେ ଅନୁଷ୍ଠିତ ହୋଇ ଆସୁଅଛି । ୧୯୪୬ ମସିହାରେ ପୁରୀ ଓ ସାକ୍ଷୀଗୋପାଳରେ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ଶାଖାମାନ ସ୍ଥାପନ କରାଗଲା ଓ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ପୁରୀ ଶାଖା ତରଫରୁ ଭଞ୍ଜଜୟନ୍ତୀ ୧୯୪୭ ମସିହାରେ ସ୍ୱର୍ଗତ ଦେଓ୍ୱାନ ବାହାଦୂର ଦମ୍ବାନିଧି ଦାସଙ୍କ ବାସଭବନରେ ଅପୂର୍ବ ଉତ୍ସାହର ସହିତ ଅନୁଷ୍ଠିତ ହେଲା । ସେ ଉତ୍ସବର ସଭାପତି ଥିଲେ ସୁବିଦିତ ଗ୍ରନ୍ଥ "ପ୍ରାଚୀନ ଉତ୍କଳ"ର ପ୍ରଣେତା ଶ୍ରୀ ଜଗବନ୍ଧୁ ସିଂହ ।

ପରବର୍ତ୍ତୀ ସମୟର କଥା । ଠିକ୍ ଏହି ଭଞ୍ଜ-ଜୟନ୍ତୀ ମେ ୧୭ ତାରିଖରେ ନରେନ୍ଦ୍ର ସ୍ନାନ କରିସାରି ଜଗବନ୍ଧୁ ସିଂହଙ୍କ ଦେହାନ୍ତ ଘଟିଲା । ସେହିଦିନ ମଧ୍ୟ ଭଞ୍ଜ-ଜୟନ୍ତୀରେ ତାଙ୍କର ସଭାପତିତ୍ୱ କରିବା ଥିଲା । ସ୍ୱର୍ଗତ ଦୟାନିଧି ଦାସଙ୍କ ପୁତ୍ର ସ୍ୱର୍ଗତ ନିମାଇଁ ଚରଣଙ୍କ ଧର୍ମପତ୍ନୀ ହେମମଞ୍ଜରୀ ଦେବୀଙ୍କ ପ୍ରେରଣା ଓ ପୃଷ୍ଠ-ପୋଷକତାରେ ପୁରୀ ଶାଖା ଅଗ୍ରଗତି କରିବାକୁ ଲାଗିଲା । ହେମମଞ୍ଜରୀ ଦେବୀ ଥିଲେ , ଜଣେ ସମ୍ଭ୍ରାନ୍ତ କୁଳସମ୍ଭୂତା, କଳାନୁରାଗୀ, ସ୍ୱାଧୀନଚେତା ଜାତୀୟତାବାଦୀ ରମଣୀ । ସେ ନିଜ ହସ୍ତରେ ବୀଣାପୁସ୍ତକ ଧାରିଣୀ ସରସ୍ୱତୀ । କଳିଙ୍ଗ ଭାରତୀଙ୍କର ଏକ ପ୍ରେରଣାଦାୟିନୀ ମୃଣ୍ମୟମୂର୍ତ୍ତି ଗଠନ କରିଥିଲେ । ତାଙ୍କ ବାସଗୃହ ପୁରୀ ବାଲୁଖଣ୍ଡରେ (ଅଧୁନା ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ଠିକ୍ ପୂର୍ବପାର୍ଶ୍ୱରେ) ଥିବା ଦ୍ୱିତଳ ପ୍ରାସାଦ "ଦୟାନିଧିଭବନ"ରେ ଉତ୍କଳ ଛାତ୍ର ସାହିତ୍ୟ ସମାଜର କାର୍ଯ୍ୟାଳୟ ସ୍ଥାପିତ ହୋଇଥିଲା । ବଚ୍ଛନ୍ଦଚରଣଙ୍କ ପ୍ରିୟ ବନ୍ଧୁ ସ୍ୱର୍ଗତ ନିମାଇଁ ଚରଣଙ୍କ ଏକମାତ୍ର ପୁତ୍ର ଶ୍ରୀ ଜାନକୀ ପ୍ରସାଦ ଦାସ ବଚ୍ଛନ୍ଦଚରଣଙ୍କ ଅନୁଗତ ଶିଷ୍ୟ-ମାନଙ୍କ ମଧ୍ୟରୁ ଥିଲେ ଅନ୍ୟତମ । ଶ୍ରୀ ବେଣୁଧର ପୃଷ୍ଟି , ଶ୍ରୀ ଶଶିଶେଖର ମହାପାତ୍ର , ଶ୍ରୀ ହରିହର ଦାସଙ୍କ ନିରଳସ ଉଦ୍ୟମ ଫଳରେ ପୁରୀ ଶାଖା ଏକ ବଳିଷ୍ଠ ସଙ୍ଗଠନରେ ପରିଣତ ହେଲା । ପରବର୍ତ୍ତୀ ସମୟରେ ଶ୍ରୀ ବେଣୁଧର ପୃଷ୍ଟିଙ୍କ ଉଦ୍ୟମରେ ସମ୍ବଲପୁରରେ ଭଞ୍ଜ-ଜୟନ୍ତୀ ଉତ୍ସବ ପାଳିତ ହେଲା । ଭୁବନେଶ୍ୱର ଭଞ୍ଜ-ଜୟନ୍ତୀର ସଂପାଦକ ରୂପେ ଶ୍ରୀ ବେଣୁଧର ପୃଷ୍ଟି ଅଦ୍ୟାବଧି କାର୍ଯ୍ୟ କରି ଆସୁଛନ୍ତି । ବଚ୍ଛନ୍ଦଚରଣ ପୁରୀ ଯାଉଥିଲାବେଳେ ଦୟାନିଧି ଭବନରେ ଆତିଥ୍ୟ ଗ୍ରହଣ କରୁଥିଲେ ।

"୧୯୪୪, ୧୯୪୫, ୧୯୪୬ ମସିହା ଉତ୍କଳ ଛାତ୍ର ସାହିତ୍ୟ ସମାଜର ପ୍ରାରମ୍ଭିକ ଅବସ୍ଥା ।" ସେ ସମସ୍ତ ବିଷୟରେ ବଚ୍ଛନ୍ଦଚରଣ ଲେଖିଛନ୍ତି, "ହିସାବ ଖାତାରୁ ଦେଖାଯାଏ ଯେ ଉତ୍କଳର ଅତୀତ ସାରସ୍ୱତ ଗୌରବର ଉଦ୍ଧାର ନିମନ୍ତେ ଅପୂର୍ବ ଉତ୍ସାହରେ ଉନ୍ମାଦିତ ହୋଇ ତରୁଣ ଛାତ୍ରମାନେ ସମାଜ କର୍ତ୍ତୃକ ବିଭିନ୍ନ ସାରସ୍ୱତ ଉତ୍ସବ ଓ ନାଟକମାନଙ୍କର ଅଭିନୟ ନିମନ୍ତେ ଯାବତୀୟ ଟଙ୍କା ନିଜେ ନିଜେ ଦେଇ ଅଛନ୍ତି । ସେମାନଙ୍କର ଆତ୍ମନିର୍ଭରଶୀଳ ମନୋବୃତ୍ତିବଶତଃ ପ୍ରତିଷ୍ଠାତା-ସଭାପତି ରୂପେ ଧନ ନିମନ୍ତେ ମୋତେ କୌଣସି ଦିନ ମୁଣ୍ଡ ଘୁରାଇବାକୁ ପଡ଼ିନାହିଁ ।" (୩୫)

୧୯୪୭ ମସିହା ବେଳକୁ ରସିଦ ବହିରେ ଚାନ୍ଦା ଆଦାୟ କରାଗଲା । କିନ୍ତୁ ସଂଖ୍ୟାଂଶରେ ଉତ୍କଳ ଛାତ୍ର ସାହିତ୍ୟ ସମାଜର ସଭ୍ୟମାନେ ହିଁ ନିଜ ଅନୁଷ୍ଠାନର

ଖଡ଼ି ନିଜେ ବନ୍ଧନ କରୁଥିଲେ । ୧୯୪୮ ମସିହା ବେଳକୁ ସପ୍ତାହ ବ୍ୟାପୀ ଭଞ୍ଜ-ଜୟନ୍ତୀ ପାଳିତ ହେବାକୁ ଲାଗିଲା । ଏହା ସାଙ୍ଗକୁ ଦୀନକୃଷ୍ଣ, କବି ସୂର୍ଯ୍ୟ, ଗୋପାଳକୃଷ୍ଣଙ୍କ ଜୟନ୍ତୀ ଦିବସ ପାଳିତ ହେଉଥିଲା ଓ ଏ ଉତ୍ସବ ସବୁ ଭାଷଣ ଓ ସଙ୍ଗୀତ ମୁଖର ହୋଇ ରହୁଥିଲା । ପାଲା, ଦାସକାଠିଆ, ଓଡ଼ିଶୀ ନୃତ୍ୟ-ସଙ୍ଗୀତ, ଗୋଟିପୁଅ ନୃତ୍ୟକୁ ସଭାମାନଙ୍କରେ ପରିବେଷଣ କରାଯାଉଥିଲା ଓ ଏସବୁ ଯେ ଆମ ଜାତୀୟ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ତାହା ପ୍ରତିପାଦନ କରାଯାଉଥିଲା । ୧୯୫୩ ମସିହାରେ ଭଞ୍ଜ-ଜୟନ୍ତୀର ଭବ୍ୟରୂପ ପ୍ରକଟିତ ହେଲା । ରେଭେନ୍ସା କଲେଜିଏଟ୍ ସ୍କୁଲ୍ ହତାରେ ବହୁ ଜନ ସମାଗମ ମଧ୍ୟରେ ଭଞ୍ଜ-ଜୟନ୍ତୀର ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଥିଲା । ଆଠ ଦିନ ବ୍ୟାପୀ ଏହି ଉତ୍ସବର ପଞ୍ଚମ ଦିନରେ ରାଜ୍ୟପାଳ ଶ୍ରୀ ସୟଦ ଫଜଲ୍ ଅଲି ଓ ଅଷ୍ଟମ ଦିନରେ ଡକ୍ଟର ଶ୍ରୀ ହରେକୃଷ୍ଣ ମହତାବ ପୁରୋଧା ଆସନ ଅଳଂକୃତ କରିଥିଲେ । ଓଡ଼ିଶାର ସକଳ ଗଣ୍ୟମାନ ବ୍ୟକ୍ତି ଆଦର ଓ ଆଗ୍ରହ ସହିତ କଳିଙ୍ଗ ଭାରତୀ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ଉତ୍ସବମାନଙ୍କରେ ଯୋଗଦାନ କରି ଜାତୀୟ ସାଂସ୍କୃତିକ ପରମ୍ପରାର ମହତ୍ତ୍ୱ ପ୍ରକାଶନ କରୁଥିଲେ । ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର, ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଡକ୍ଟର ପରଶୁରାମ ମିଶ୍ର, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଶ୍ରୀ ସୁଧାକର ପଟ୍ଟନାୟକ, ଶ୍ରୀ ପ୍ରାଣନାଥ ମହାନ୍ତି, ଶ୍ରୀ ବୀର କିଶୋର ରାୟ, ଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ଶ୍ରୀମତୀ ଅପର୍ଣ୍ଣା ଦେବୀ, ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ, ଶ୍ରୀ ବଳଭଦ୍ର ବହିଦାର, ଶ୍ରୀ ଚନ୍ଦ୍ରଶେଖର ପଟ୍ଟନାୟକ, କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ, ପଣ୍ଡିତ ଶ୍ରୀ ସ୍ୱପ୍ନେଶ୍ୱର ଦାଶ, କବି ଭୂଷଣ ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଶ୍ରୀ କପିଳେଶ୍ୱର ଦାସ, ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶ୍ରୀ ଜୟକୃଷ୍ଣ ମିଶ୍ର, ଶ୍ରୀ ଗୌରୀ କୁମାର ବ୍ରହ୍ମା, ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କବି ଶ୍ରୀ ଗୋଲକ ଚନ୍ଦ୍ର ପ୍ରଧାନ, ପଣ୍ଡିତ ବ୍ରଜବନ୍ଧୁ ତ୍ରିପାଠୀ, ଶ୍ରୀ ବୀର ହନୁମାନ ଶାସ୍ତ୍ରୀ, ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ, ପଣ୍ଡିତ ସଦାଶିବ ରଥଶର୍ମା ପ୍ରମୁଖ ସାହିତ୍ୟ ସମାଲୋଚକ ତଥା ଚିନ୍ତାନାୟକ ମାନେ କଳିଙ୍ଗ ଭାରତୀ ମଞ୍ଚରୁ ନିଜର ଜାତୀୟବାଦୀ ସୁଚିନ୍ତିତ ଭାବଧାରା ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରୁଥିଲେ । ସେମାନଙ୍କ ଚିନ୍ତା ଓ ଚେତନାର ଆଭାଷଣ ଖବର କାଗଜ ମାଧ୍ୟମରେ ଦେଶରେ ପ୍ରସରି ଯାଉଥିଲା । କଳିଙ୍ଗ ଭାରତୀର ଆଦର୍ଶକୁ ପ୍ରତିରୋଧ କରୁଥିବା ସାହିତ୍ୟିକ ଗୋଷ୍ଠୀଙ୍କ ସହିତ ଯେଉଁ ମୁହାଁ-ମୁହିଁ ମୁକାବିଲା ହେଉଥିଲା, ତହିଁରେ ଭାଷଣ ସବୁ ଅଗ୍ନିବୃଷ୍ଟି କରୁଥିଲା । କଳିଙ୍ଗ ଭାରତୀର ସମର୍ଥ ସେନାନୀବୃନ୍ଦ ଯୁକ୍ତିପ୍ରଯୁକ୍ତି ଉପସ୍ଥାପନ କରି ଅପୂର୍ବ ଦକ୍ଷତାର ସହିତ ପ୍ରତିରୋଧକାରୀଙ୍କୁ "ଅପଦସ୍ତ" କରି ଦେଉଥିଲେ ।

"ଛନ୍ଦ ଓ ମାତ୍ରାବୃତ୍ତ", "ଯାନ୍ତ୍ରିକ ଯୁଗରେ ଛନ୍ଦ" ଆଦି ଯେଉଁ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା, ତାହା ଓଡ଼ିଶାର ଭାଷଣ ମଞ୍ଚରେ ଅବିସ୍ମରଣୀୟ ଉଷ୍ମା ସୃଷ୍ଟି କରିଥିଲା । ବିଚ୍ଛନ୍ଦଚରଣ ସଭାରେ ସ୍ୱୟଂ ଉପସ୍ଥିତ ରହି କଳିଙ୍ଗ ଭାରତୀ ପକ୍ଷରୁ ବକ୍ତାମାନଙ୍କୁ ଉତ୍ସାହିତ ଓ ପରିଚାଳିତ କରୁଥିଲେ । ସଭାରେ ସେ ଉଚ୍ଚ ସ୍ୱରରେ ଘୋଷଣା କରି କହୁଥିଲେ, ଜାତୀୟତାବାଦୀମାନଙ୍କ ପକ୍ଷରେ ସେମାନଙ୍କ ବିପକ୍ଷବାଦୀମାନଙ୍କ ସହିତ କୌଣସି ପ୍ରକାର ସାଲିସ ଅସମ୍ଭବ । କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀକୁ କଠୋର ନିୟମ ଶୃଙ୍ଖଳାର ବଶବର୍ତ୍ତୀ ହୋଇ ଚଳିବାକୁ ପଡ଼ୁଥିଲା । ସଭାରେ ଭାଷଣ ଦେଉଥିଲା ବେଳେ ଗୋଟିଏ ହେଲେ ଇଂରାଜୀ ଶବ୍ଦ ଉଚ୍ଚାରଣ କଲେ କିମ୍ବା କୌଣସି ଅଣଓଡ଼ିଆ ଶବ୍ଦର ଅକାରଣ ଆଶ୍ରୟ ନେଲେ, ବିଚ୍ଛନ୍ଦଚରଣ ନିଜ ଗୋଷ୍ଠୀର ପ୍ରମୁଖ ସଭ୍ୟମାନଙ୍କ ଉପରେ ଅଗ୍ନିଶର୍ମା ହୋଇ ଉଠୁଥିଲେ । କୌଣସି ଉଦ୍ଧୃତି ବା ଉଦାହରଣ ଉପସ୍ଥାପନ କଲାବେଳେ ତାହା ଯଦି ନିର୍ଭୁଲ ଭାବରେ ଉଚ୍ଚାର ନକରାଗଲା, ତାହାକୁ ଅକ୍ଷମଣୀୟ ଅପରାଧ ବୋଲି ବିବେଚନା କରାଯାଉଥିଲା । ଯେଉଁ ଉଦ୍ଧୃତିର ଯେଉଁ ସମୟରେ ପ୍ରୟୋଜନ, ତାହା ନିଜ ସ୍ମୃତିରୁ ଉପସ୍ଥାପନ ନ କରି ପାରିଲେ କଳିଙ୍ଗ ଭାରତୀର ସାଧକ ଗୋଷ୍ଠୀଙ୍କୁ କଟୁ ମନ୍ତବ୍ୟ ସହ୍ୟ କରିବାକୁ ହେଉଥିଲା । ଭାଷାଗତ, ଭାବଗତ ତ୍ରୁଟି ଘଟିଲେ ଭବିଷ୍ୟତରେ ଏପରି ନ କରିବା ପାଇଁ ସାବଧାନ କରାଇ ଦିଆଯାଉଥିଲା । ତେଣୁ କୌଣସି ସଭା ସମିତି ବା ଜୟନ୍ତୀ ପୂର୍ବରୁ କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀଙ୍କୁ ବିଶେଷ ତତ୍ପରତାର ସହିତ ପ୍ରସ୍ତୁତ ହେବାକୁ ପଡ଼ୁଥିଲା । ବିଚ୍ଛନ୍ଦଚରଣ ହିଁ ଥିଲେ ଶିକ୍ଷାଗୁରୁ, ଦୀକ୍ଷାଗୁରୁ ଓ କଠୋର ପରୀକ୍ଷକ । ବିଚ୍ଛନ୍ଦଚରଣଙ୍କ ନଗରପଡ଼ା ବାସଗୃହର ନାମ ଥିଲା "କଳିଙ୍ଗଭାରତୀ ଭବନ" । ଏହି କଳିଙ୍ଗ ଭାରତୀ ଭବନରେ ଦୈନିକ ଅଧିବେଶନ ବେଳେ ବିଭିନ୍ନ ସଭ୍ୟମାନଙ୍କ ଦୋଷ, ତ୍ରୁଟି କର୍ତ୍ତବ୍ୟ ଓ କୃତିତ୍ୱର ସମୀକ୍ଷା କରାଯାଉଥିଲା । ଭାଷଣ ଦେବା, ପ୍ରବନ୍ଧ ଓ କବିତା ରଚନା କରିବା, ସଙ୍ଗୀତ ସାଧନା କରିବା, ଚିତ୍ରାଙ୍କନ କରିବା ଓ ବିଶେଷ କରି ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି ବିଷୟରେ ଗଭୀର ଅଧ୍ୟୟନ କରିବା ଥିଲା କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀର ନିତ୍ୟନୈମିତ୍ତିକ କାର୍ଯ୍ୟ । ବିପକ୍ଷବାଦୀମାନେ କେଉଁ କେଉଁ ଯୁକ୍ତି ଉପସ୍ଥାପନ କରୁଛନ୍ତି ଓ ଭାଷଣମାନଙ୍କରେ କି କି କୌଶଳ ଅବଲମ୍ବନ କରୁଛନ୍ତି, ତାହାର ଚିକିନିଖ ତର୍ଜମା କରାଯାଉଥିଲା । ସେମାନଙ୍କ ଆପାତ ରମଣୀୟ ଅପଯୁକ୍ତିକୁ କିପରି ଖଣ୍ଡନ କରାଯିବ ଓ କେଉଁ ଢଙ୍ଗରେ ଭାଷଣ ଶୈଳୀକୁ ଗଢ଼ିବାକୁ ପଡ଼ିବ ତାହା କଳିଙ୍ଗ ଭାରତୀ ଭବନରେ ବିଧିବଦ୍ଧ ଭାବରେ ଶିକ୍ଷା ଦିଆଯାଉଥିଲା । ଏପରିକି କେଉଁ କେଉଁ ବ୍ୟକ୍ତିମାନେ ବିପକ୍ଷ ଦଳଭୁକ୍ତ ହୋଇ ରହିଛନ୍ତି ଓ ସେମାନଙ୍କର ଶକ୍ତି ସାମର୍ଥ୍ୟ କେତେ ତାହା ମଧ୍ୟ ତାଲିକା କରି ରଖାଯାଉଥିଲା । ବିପକ୍ଷକୁ

ଦୁର୍ବଳ ମନେ କରିବା ବା ତାଙ୍କ ଦ୍ୱାରା ଉପସ୍ଥାପିତ ଯୁକ୍ତିକୁ ଉପେକ୍ଷା କରିବା ଅନୁଚିତ କାର୍ଯ୍ୟ ବୋଲି ବିବେଚିତ ହେଉଥିଲା । ଆଦର୍ଶ ନିଷ୍ଠାପର ଭାବରେ ଅଟଳ ରହି ପରପକ୍ଷକୁ ମୁକାବିଲା କରିବା ମାର୍ଗ କଳିଙ୍ଗଭାରତୀ ସାଧକ ଗୋଷ୍ଠୀ ଶିକ୍ଷା କରୁଥିଲେ । ଯେଉଁମାନେ ଏଭଳି ପ୍ରଶିକ୍ଷଣରେ ଉତ୍ତୀର୍ଣ୍ଣ ହୋଇ ଯାଇଛନ୍ତି, ସେମାନଙ୍କ ମନ ବଚନରେ କଳିଙ୍ଗଭାରତୀ ସଂସ୍କାର ମୁଦ୍ରାଙ୍କିତ ହୋଇ ରହି ଯାଇଛି । ତାହା ସେମାନଙ୍କ ଜୀବନର ମହାନ୍ ସମ୍ବଳ ହୋଇଛି ବୋଲି ଶତ୍ରୁମାନେ ମଧ୍ୟ ସ୍ୱୀକାର କରିଛନ୍ତି । ୧୯୬୬ ମସିହାରେ ବଳ୍ଲଭଚରଣ କହିଥିଲେ "ଆଜି ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ କଳିଙ୍ଗଭାରତୀ ଦୃଷ୍ଟିଭଙ୍ଗୀ ବୋଲି ଯେଉଁ ସ୍ୱତନ୍ତ୍ର ସାମ୍ପ୍ରଦାୟ ସୃଷ୍ଟି ହୋଇଅଛି, ତାହା ଏହି କ୍ଷୁଦ୍ର ସାଧକ ଗୋଷ୍ଠୀର ଦ୍ୱାଦଶ ବର୍ଷ ବ୍ୟାପୀ ନିରବଚ୍ଛିନ୍ନ ଦୈନନ୍ଦିନ ସାଧନାର ଫଳ । (୩୭)

ବଲ୍ଲଭଚରଣଙ୍କ ନିଷ୍ଠା ଓ କଠୋର ନିୟମ ଶୃଙ୍ଖଳା ପ୍ରବର୍ତ୍ତନ ବିଷୟରେ ସରୁଗ୍ରନନ୍ଦ କହିଛନ୍ତି, ଯେ ଓଡ଼ିଆ ଜାତି, ତାହାର ଭାଷା ଓ ସଂସ୍କୃତି "ପ୍ରାଣମୂର୍ଚ୍ଛା ଆତ୍ମରକ୍ଷା ସଂଗ୍ରାମରେ ଲିପ୍ତ" ଥିଲା ବେଳେ "ଏ ସବୁ ବ୍ୟବସ୍ଥା ଯେତେ ଉକ୍ତ ହେଉ ନା କାହିଁକି, ଜାତିପ୍ରେମୀ ଚିନ୍ତାଶୀଳ ବ୍ୟକ୍ତିମାନେ ସର୍ବଦା ଏହାକୁ ସ୍ୱାଗତ କରନ୍ତି ।" (୩୭)

କଳିଙ୍ଗ ଭାରତୀ ପକ୍ଷରୁ ୧୯୬୪ ମସିହା ଠାରୁ "ସାରସ୍ୱତ ମହୋତ୍ସବ"ର ପ୍ରବର୍ତ୍ତନ କରାଗଲା । ଏହି ମହୋତ୍ସବରେ ଓଡ଼ିଶାର ପୁରାଣ ଯୁଗର କବି ସାରଳାଦାସ, ତଥା ପଞ୍ଚସଖା, କାବ୍ୟ ଯୁଗର କବି ଦୀନକୃଷ୍ଣ, ଭକ୍ତଚରଣ ଓ ଅଭିମନ୍ୟୁ ,ତଥା ସଙ୍ଗୀତ ଯୁଗର କବି ବନମାଳୀ, କବିସୂର୍ଯ୍ୟ, ଗୌରଚରଣ, ଗୋପାଳକୃଷ୍ଣଙ୍କ ସ୍ମୃତିପୂଜା କରାଯାଉଥିଲା । ବର୍ଷକୁ ବର୍ଷ ସାରସ୍ୱତ ମହୋତ୍ସବ ଅଦ୍ୟାବଧି ପାଳିତ ହୋଇ ଆସୁଅଛି । କଳିଙ୍ଗ ଭାରତୀ ଅନୁଷ୍ଠାନ ବିଷୟରେ ବଲ୍ଲଭଚରଣ କହିଛନ୍ତି, "ଭଞ୍ଜ-ଜୟନ୍ତୀ ଏହାର ମୁଖ୍ୟ ଉତ୍ସବ ହୋଇଥିଲେ ସୁଦ୍ଧା ପରମ୍ପରା ସମ୍ମତ ସମଗ୍ର ଜାତୀୟ ସାହିତ୍ୟ ଏହାର ଅନୁଶୀଳନ ଓ ସେବାର ସାମଗ୍ରୀ ।" (୩୮) ଜାତୀୟ ପରମ୍ପରା ସମ୍ମତ ସାହିତ୍ୟ ଓ କଳାର ଅନୁଶୀଳନ ଓ ସେବାରେ କଳିଙ୍ଗ ଭାରତୀ ଓ ଉତ୍କଳ କ୍ଷୁଦ୍ର ସାହିତ୍ୟ ସମାଜ ନିୟୋଜିତ ହୋଇ ରହିବା ପାଇଁ ବ୍ରତ ଗ୍ରହଣ କରିଛନ୍ତି । ବଲ୍ଲଭଚରଣ ଅତ୍ୟନ୍ତ କ୍ଷୋଭର ସହିତ ପ୍ରକାଶ କରିଛନ୍ତି ଯେ, ତାଙ୍କୁ ଏଭଳି ଏକ ସମସ୍ତ ସହିତ ମୁକାବିଲା କରିବାକୁ ପଡ଼ୁଛି, ଯେତେବେଳେ— "ଯେତେବେଳକୁ ଇଂରାଜୀମାନଙ୍କ ଅନୁକରଣରେ ପ୍ରମତ୍ତ ଗୋଷ୍ଠୀ ଓଡ଼ିଶାର ପବିତ୍ର ସାଂସ୍କୃତିକ ଓ ସାହିତ୍ୟିକ ପରମ୍ପରାରେ ଛେଦ ଘଟାଇ ଏକ ଅର୍ବାଚୀନ ଧାରାକୁ

ପ୍ରଚାର କରିବାକୁ କଟିବଦ୍ଧ ଉଦ୍ୟମ କରିଥିଲେ । ପାଶ୍ଚାତ୍ୟ ସାହିତ୍ୟ ଓ ସଂସ୍କୃତିରେ ଆତ୍ମବିଭୋର ହୋଇ ଏହି ଗୋଷ୍ଠୀ ଭାରତୀୟ ପରମ୍ପରା ପ୍ରତି ଅମର୍ଯ୍ୟାଦା ଭାବ ପୋଷଣ କରୁଥିଲେ । ଏପରିକି ଭାରତୀୟ ତଥା ଉତ୍କଳୀୟ କୃଷ୍ଟିର ପ୍ରକୃଷ୍ଟ ପ୍ରତିନିଧି କବି-ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏମାନଙ୍କ ପାଖରେ ହତାଦରର ପାତ୍ର ହୋଇଥିଲେ । ସମାଜର ଉଚ୍ଚ କ୍ଷମତା ଆସୀନ ଏହି ନବ୍ୟ ଶିକ୍ଷିତ ଚିନ୍ତାନାୟକମାନେ ଓଡ଼ିଶାର ଶିକ୍ଷା ବ୍ୟବସ୍ଥାକୁ କବଳିତ କରି ପାଶ୍ଚାତ୍ୟ ପ୍ରଭାବର ଯେଉଁ ଜଡ଼ବାଦ-ସର୍ବସ୍ୱ ଚିନ୍ତା ଓ ଚେତନା ଏ ଦେଶକୁ ବୁହାଇ ଆଣିଲେ, ତଦ୍ଦ୍ୱାରା ଭାରତୀୟ ତଥା ଉତ୍କଳୀୟ ଶୁଦ୍ଧ ଜାତୀୟ ପରମ୍ପରା-ସମ୍ମତ ଆଧ୍ୟାତ୍ମିକବାଦ ପ୍ରଚଣ୍ଡ ଭାବରେ ବ୍ୟାହତ ହେଲା । ଜୀବନଚର୍ଯ୍ୟାରେ ତଥା ସାହିତ୍ୟର ପ୍ରକାଶ ଭଙ୍ଗୀ ଓ ବିଷୟବସ୍ତୁ ନିର୍ବାଚନରେ ଏହି ସର୍ବଗ୍ରାସୀ ପାଶ୍ଚାତ୍ୟ ଜଡ଼ବାଦ ଆତ୍ମପ୍ରକାଶ କଲା । ନନ୍ଦିକିଶୋର କହୁଥିଲେ, ସାହିତ୍ୟ ହେଉଛି ଜୀବନର ମୁକୁର । ତେଣୁ ଏକ ଜଡ଼ବାଦୀ ଜୀବନଚର୍ଯ୍ୟାର ଛାୟା ଏମାନଙ୍କ ରଚିତ ସାହିତ୍ୟରେ ବିମ୍ବିତ ହେବା ସ୍ୱାଭାବିକ । ଅବୈଧ ପ୍ରେମ ଓ ଅସ୍ୱାଭାବିକ ପ୍ରେମକୁ ବିଷୟବସ୍ତୁ କରି ସାହିତ୍ୟ ସୃଷ୍ଟି କରାଗଲା ଓ ରଚନା ଶୈଳୀରୁ ଛନ୍ଦ ରାଗରାଗିଣୀ-ମାନଙ୍କୁ ନିର୍ବାସିତ କରାଗଲା । ଓଡ଼ିଆ ସାହିତ୍ୟରେ ଭାରତୀୟ ସଂସ୍କୃତି ସମ୍ମତ ଚିନ୍ତାଧାରା ତଥା ଛନ୍ଦ ଓ ରାଗରାଗିଣୀମାନଙ୍କୁ ପୁନଃ ପ୍ରଚଳନ କରିବା ଲାଗି ନନ୍ଦିକିଶୋର କୃତସଂକଳ୍ପ ହେଲେ ।

ନନ୍ଦିକିଶୋର କହୁଥିଲେ ଯେ ଓଡ଼ିଆ ସାହିତ୍ୟରେ ରାଧାନାଥ ରାୟଙ୍କଠାରୁ ପରମ୍ପରା ଭଙ୍ଗ ଆରମ୍ଭ ହୋଇଥିଲେ ହେଁ ତାଙ୍କ ପରବର୍ତ୍ତୀ "ସବୁଜ ଯୁଗୀୟ" ଲେଖକମାନଙ୍କ ଦ୍ୱାରା ତାହା କ୍ରମଶଃ ବଢ଼ିବାକୁ ଲାଗିଲା । ସାହେବୀ ଅନୁକରଣ ସାଙ୍ଗକୁ ବଙ୍ଗୀୟ ଅନୁକରଣ ଓଡ଼ିଆ ସାହିତ୍ୟ ପରମ୍ପରାକୁ ଅଧିକ କଳୁଷିତ ଓ ପଥଭ୍ରଷ୍ଟ କଲା ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ ଆଧୁନିକତାର ପୃଷ୍ଠପୋଷକତା କରି ଯେଉଁ ସାହିତ୍ୟିକମାନେ ସାହିତ୍ୟ ସାଧନା କରୁଥିଲେ, "ସବୁଜ ଗୋଷ୍ଠୀ" ଓ ସେମାନଙ୍କ ସାହିତ୍ୟକୁ "ସବୁଜ ସାହିତ୍ୟ" ଆଖ୍ୟା ଦିଆଯାଇଛି । ଏମାନେ ତାଙ୍କ ସାହିତ୍ୟ ସୃଷ୍ଟିର ଅନୁପ୍ରେରଣା ଲାଭ କରୁଥିଲେ ବଙ୍ଗଳାରୁ । ବଙ୍ଗ ସାହିତ୍ୟ ଛାଞ୍ଚରେ ଓ ରବୀନ୍ଦ୍ରନାଥଙ୍କ ପ୍ରଭାବରେ ଏମାନେ ସାହିତ୍ୟ ରଚନା କରୁଥିଲେ । ସବୁଜ ଗୋଷ୍ଠୀର ଜଣେ ପ୍ରମୁଖ ସଭ୍ୟ ସୁସାହିତ୍ୟିକ ଶ୍ରୀ ଶରତ୍ ଚନ୍ଦ୍ର ମୁଖାର୍ଜି, ଆଇ. ଏ. ଏସ୍ ଲେଖିଛନ୍ତି, "ନନ୍ଦିକିଶୋର ତାଙ୍କ ବ୍ୟଙ୍ଗ କବିତା "ସବୁଜ ପତ୍ର" ରେ ପ୍ରଥମ ଥର ପାଇଁ ଆମ୍ଭମାନଙ୍କୁ ଯେଉଁ "ସବୁଜ" ଆଖ୍ୟା ଦେଇଥିଲେ, ଆମ୍ଭେମାନେ

ଅଞ୍ଚଳମାନଙ୍କରେ ସେହି ନାମଟିକୁ ବରଣ କରି ନେଇଥିଲୁ । (୩୯) "ସବୁଜ" ନାମଟି ବଙ୍ଗଳାର ସାହିତ୍ୟିକ ପ୍ରମଥନାଥ ଚୌଧୁରୀ ଅଥବା ରବୀନ୍ଦ୍ରନାଥଙ୍କ ଲେଖାରୁ ଆସି ନ ଥିଲା ବୋଲି ଉଲ୍ଲେଖ କରି ଶ୍ରୀଯୁକ୍ତ ମୁଖାର୍ଜି କହିଛନ୍ତି "ଆମ ଦଳଟିର "ସବୁଜ" ନାମରେ ନାମକରଣ ବଳ୍ଲଭଚରଣ ଯେଉଁ ଉଦ୍ଦେଶ୍ୟରେ କରିଥାଆନ୍ତୁ ନା କାହିଁକି, ସେହି ନାମ ଧାରଣ କରି ଆମେ ସାର୍ଥକ ହୋଇଅଛୁ ।" (୪୦)

ବଛନ୍ଦଚରଣଙ୍କ ସହିତ ଶରତ ମୁଖାର୍ଜି ଇଂରାଜୀ ଭାଷାରେ ମସୀଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ଶ୍ରୀ ମୁଖାର୍ଜି ଲେଖିଛନ୍ତି, ବଛନ୍ଦଚରଣ ନାମ ଗୋପନ କରି **"The Oriya"** ସାପ୍ତାହିକରେ ଲେଖୁଥାଆନ୍ତି ଓ ମୁଁ ନାମ ଗୋପନ କରି **"The Star of Utkal"** ସାପ୍ତାହିକରେ ଲେଖୁଥାଏ । ସେ ଜାଣି ଥାଆନ୍ତି ଯେ ମୁଁ ତ ତାଙ୍କ ବିରୁଦ୍ଧରେ ଲେଖେ ଏବଂ ମୁଁ ଜାଣି ଥାଏ ସେ ମୋ ବିରୁଦ୍ଧରେ ଲେଖନ୍ତି, ମାତ୍ର ଏହି ମସୀଯୁଦ୍ଧ କଦାପି ବ୍ୟକ୍ତିଗତ ସ୍ତରକୁ ଆସି ନାହିଁ । ଦେଖା ହେଲା ମାତ୍ରକେ ସେହି ସ୍ମିତହାସ୍ୟ ଓ ଅନର୍ଗଳ ତାଙ୍କର ପ୍ରାଚୀନ ସାହିତ୍ୟର ଗୁଣ କୀର୍ତ୍ତନ । ମୁଁ ଶ୍ରୋତା ଭାବରେ ରହି ମୁଗ୍ଧ ହୋଇ ତାଙ୍କ କଥା ଶୁଣେ ।" (୪୧)

ବଛନ୍ଦଚରଣଙ୍କ ଚରିତ୍ରର ଗୋଟିଏ ବୈଶିଷ୍ଟ ପ୍ରତି ଶ୍ରୀ ମୁଖାର୍ଜି ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ତାହା ହେଉଛି, ତାଙ୍କ ଚରିତ୍ର ଆଦର୍ଶଗତ ସଂଗ୍ରାମରେ ଅସ୍ତ୍ର-ସୁଲଭ ଅସହିଷ୍ଣୁତା ସହିତ ବ୍ୟକ୍ତିଗତ ଜୀବନରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସହିଷ୍ଣୁତାର ସହାବସ୍ଥାନ । ବଛନ୍ଦଚରଣଙ୍କର ଧାରଣା ଥିଲା ଯେ, ଯେଉଁମାନେ ତାଙ୍କ ଆଦର୍ଶରୁ ଭିନ୍ନମତ ପୋଷଣ କରୁଛନ୍ତି, ସେମାନେ ଆଜି ନା କାଲି ଏହି ଭିନ୍ନମତରୁ ଓହରି ଆସିବେ ଓ ସତ୍ୟ, ଶିବ ଓ ସୁନ୍ଦର ଉପରେ ଆଧାରିତ ଓଡ଼ିଶାର ଜାତୀୟ ସଂସ୍କୃତିର ମହତ୍ତ୍ୱ ଅବଶ୍ୟ ଉପଲବ୍ଧି କରିବେ । ଦେଶର ସଂଜ୍ଞା ନିରୂପଣ କରି ବଛନ୍ଦଚରଣ କହୁଥିଲେ, "ସତ୍ୟଂ ଶିବଂ ସୁନ୍ଦରମ୍‌ର ଉପଲବ୍ଧି ଓ ଲବ୍ଧି ହିଁ ସଭ୍ୟତା" । (୪୨) ଜୀବନର ସକଳ କ୍ଷେତ୍ରରେ ତଥା ସମସ୍ତ ଉଦ୍ୟମରେ ନିମ୍ନାତ୍ମକ ମୂଲ୍ୟବୋଧ ଭାବେ ସତ୍ୟ ଶିବ ସୁନ୍ଦରର ଉପାସନା ଓ ଉପଲବ୍ଧିକୁ ଗ୍ରହଣ କରିବାକୁ ସେ ପରାମର୍ଶ ଦେଉଥିଲେ ।

ଓଡ଼ିଶାର ଓଡ଼ିଆ ସଂସ୍କୃତି ଓ ସାହିତ୍ୟ ଆପଣଙ୍କର ପ୍ରିୟ କାହିଁକି ?— ଏହି ପ୍ରଶ୍ନର ଉତ୍ତର ଦେଇ ସେ କହିଥିଲେ, "ଓଡ଼ିଶା ମୋର ଏତେ ପ୍ରିୟ କାହିଁକି ? ଓଡ଼ିଶା ଚିରକାଳ ସତ୍ୟ, ଶିବ, ସୁନ୍ଦରର ଉପାସନା କରି ଆସିଅଛି ।" "ଓଡ଼ିଶାର ଜାତୀୟ ସାହିତ୍ୟ ନିତ୍ୟ ବସ୍ତୁର ସନ୍ଧାନ ନେଉଥିଲା । ଓଡ଼ିଶୀ କଳାର ମଧ୍ୟ ଲକ୍ଷ୍ୟ ଥିଲା ଏହି ସନ୍ଧାନ । ଓଡ଼ିଶାର ଅମୂଲ୍ୟ ଛନ୍ଦ ଓ ରାଗରାଗିଣୀ

ସମ୍ଭାରରେ ଏହି ସାଧନ ପ୍ରକୃଷ୍ଟ ରୂପ ଲାଭ କରିଛି । ଓଡ଼ିଆ ଶିଳ୍ପୀଙ୍କ ଗ୍ରନ୍ଥ ଓ ବର୍ଣ୍ଣାଳୀ ଚିରକାଳ ଏହି ସନ୍ଧାନର ବ୍ରତୀ ହୋଇ ଅତୁଳ୍ୟ ସାଫଲ୍ୟ ଲାଭ କରିଛି । ମୁଁ ନିଜେ ସତ୍ୟ, ଶିବ, ସୁନ୍ଦରର ଉପାସକ ଓ ଅମୃତର ସନ୍ଧାନୀ । ଜନ୍ମଭୂମି ଉତ୍କଳ ମୋହର ପ୍ରିୟତମ ହେବା ଏକାନ୍ତ ସ୍ୱାଭାବିକ ।" ଓଡ଼ିଶାକୁ ସେ ଜନ୍ମଭୂମି ଓ କର୍ମଭୂମି ରୂପରେ ପାଇଥିଲେ ସତ, କିନ୍ତୁ କେବଳ ସେହି କାରଣରୁ ଓଡ଼ିଶା ତାଙ୍କର ଏତେ ପ୍ରିୟ ନଥିଲା । ଓଡ଼ିଶା ହେଉଛି ସତ୍ୟ, ଶିବ, ସୁନ୍ଦରର ଉପାସନା ଭୂମି । ତେଣୁ ଓଡ଼ିଶାକୁ ସେ ପ୍ରାଣ ଭରି ସୁଖ ପାଉଥିଲେ । ଓଡ଼ିଶୀ ସଙ୍ଗୀତ, କଳା, ସାହିତ୍ୟରେ ସତ୍ୟ, ଶିବ, ସୁନ୍ଦରର ଆବାହନ ତାଙ୍କୁ ମୁଗ୍‌ଧ କରୁଥିଲା ।

ନିଜ ଦେଶପ୍ରୀତିର ବିଶଦ ବ୍ୟାଖ୍ୟାନ କରି ସେ କହିଛନ୍ତି, "ପାର୍ଥିବ ଆକାଂକ୍ଷାରେ ଦୃଷ୍ଟିକୁ ନିବଦ୍ଧ କରିଦେବା ମୋହାବିଷ୍ଟ ବ୍ୟକ୍ତିର ଲକ୍ଷଣ । ମୋହାବିଷ୍ଟ ଦେଶପ୍ରୀତି ବା ଜାତୀୟତାବାଦ ଆଧୁନିକ ଯୁଗରେ ଯାବତୀୟ ସଂଘର୍ଷ ଓ ରକ୍ତପାତର କାରଣ ହୋଇଅଛି । ମୋହରୁ ନିଜକୁ ମୁକ୍ତ କରି ସତ୍ୟ, ଶିବ, ସୁନ୍ଦରର ଆଦର୍ଶରେ ଶୃଙ୍ଖଳିତ ହୋଇ ଦେଶପ୍ରତି ପ୍ରୀତିବନ୍ତ ହେଲେ ତାହା କଦାପି ଦୂଷଣୀୟ ହେବ ନାହିଁ । ପାର୍ଥିବ ମୋହ ବିହୀନ ଦେଶପ୍ରୀତି ପ୍ରକୃଷ୍ଟ ଦେଶପ୍ରୀତି ।" (୮୪)

ଯେଉଁମାନେ ଓଡ଼ିଶାକୁ ଭାରତରୁ ବିଚ୍ଛିନ୍ନ କରି ଅଥବା ଭାରତକୁ ବିଶ୍ୱରୁ ବିଚ୍ଛିନ୍ନ କରି ଚିନ୍ତା କରନ୍ତି, ସେହି ବିଚ୍ଛିନ୍ନତାବାଦୀମାନଙ୍କ ଦେଶପ୍ରୀତିକୁ ବିଚ୍ଛନ୍ଦଚରଣ ମୋହାବିଷ୍ଟ ଦେଶପ୍ରୀତି ବୋଲି ସମାଲୋଚନା କରିଅଛନ୍ତି । ସମଗ୍ର ବିଶ୍ୱର ସର୍ବ-ମାନବଙ୍କ ପାଇଁ ଯେଉଁ ଆଦର୍ଶ ଉଦ୍ଦିଷ୍ଟ ନୁହେଁ, ତାହା ସତ୍ୟ, ଶିବ, ସୁନ୍ଦରର ଆଦର୍ଶରେ ଗଠିତ ହୋଇ ନାହିଁ ବୋଲି ସେ ମତପ୍ରକାଶ କରୁଥିଲେ । ମୁଁ ଯେଉଁ ଦେଶରେ ଜନ୍ମ ହୋଇଛି, ସେହି ଦେଶରେ ହିଁ ମରିବି—ଏହି କଥାକୁ ବିଚ୍ଛନ୍ଦଚରଣ ମୋହାବିଷ୍ଟ ଦେଶପ୍ରୀତିର ଆଉ ଏକ ଦୃଷ୍ଟାନ୍ତ ବୋଲି କହୁଥିଲେ ।

ବିଚ୍ଛନ୍ଦଚରଣଙ୍କ ଦେଶପ୍ରୀତି ଏହି ମୋହାବିଷ୍ଟ ଦେଶପ୍ରୀତି ନଥିଲା । ମୋହାବିଷ୍ଟ ଦେଶପ୍ରୀତିକୁ ସେ ଜଡ଼ବାଦୀ ଦେଶପ୍ରୀତି ବୋଲି ଆଖ୍ୟାତ କରିଥିଲେ । ଯେଉଁମାନେ ଆତ୍ମାକୁ ପାସୋରି ଦେଇ କେବଳ ଶରୀରରେ ଅଭିନିବିଷ୍ଟ ହୋଇ ରହନ୍ତି, ସେମାନଙ୍କୁ ବିଚ୍ଛନ୍ଦଚରଣ ଜଡ଼ବାଦୀ ବୋଲି ଅଭିହିତ କରିଥିଲେ । କୌଣସି ଦେଶର ଭୌଗୋଳିକ ପରିସର ହେଉଛି ସେ ଦେଶର ଶରୀର, କିନ୍ତୁ ସେ ଦେଶର ସଂସ୍କୃତି, ସାହିତ୍ୟ ହେଉଛି ତାହାର ଆତ୍ମା । ଦେଶର ଭୌଗୋଳିକ ପରିସର ପ୍ରତି

ଆବିଷ୍ଟ ହୋଇ ଆମେ ଯଦି ଦେଶର ଆତ୍ମା ପ୍ରତି ଅବହେଳା ପ୍ରଦର୍ଶନ କରୁ, ତେବେ ବୁଝିବାକୁ ହେବ, ଆମେ ମୋହାବିଷ୍ଟ, ଜଡ଼ବାଦୀ ଦେଶପ୍ରୀତି ଦ୍ୱାରା ଆକ୍ରାନ୍ତ ହୋଇଛୁ । ଭୋଗ-ଲାଳସୀ, ଶରୀର-ସର୍ବସ୍ୱ, ଇନ୍ଦ୍ରିୟ-ପରାୟଣ ଜଡ଼ବାଦକୁ ଜୀବନର ସବୁକ୍ଷେତ୍ରରେ ପରିହାର କରିବାପାଇଁ ସେ ଆହ୍ୱାନ ଦେଉଥିଲେ । ସେ କହୁଥିଲେ ଜଡ଼ବାଦର ବିଭିନ୍ନ ରୂପ ଅଛି । ତାହାର ସୂକ୍ଷ୍ମ ରୂପଗୁଡ଼ିକ ଚିହ୍ନି ପାରିବା ସହଜ ବିଷୟ ନୁହେଁ । ସମ୍ପୂର୍ଣ୍ଣ ରୂପେ ଜଡ଼ବାଦ କବଳରୁ ମୁକ୍ତି ହିଁ ଆଧ୍ୟାତ୍ମବାଦର ପ୍ରତିଷ୍ଠା ବୋଲି ବୁଝିବାକୁ ହେବ । ପାଶ୍ଚାତ୍ୟ ଦେଶରୁ ଆମଦାନୀ ଜଡ଼ବାଦୀ ଚିନ୍ତାଧାରା ବ୍ରିଟିଶ ପରବର୍ତ୍ତୀ ଯୁଗରେ ଆମ ଦେଶର ସାହିତ୍ୟ ଓ ସଂସ୍କୃତିକୁ ଆକ୍ରାନ୍ତ କରିଛି । ବିଚ୍ଛନ୍ଦଚରଣ ବିବ୍ରତ ବୋଧ କରି କହୁଥିଲେ, "ଅଧିକାଂଶ ଆଧୁନିକ ଓ ଅତ୍ୟାଧୁନିକ କବିତା ଅହଙ୍କାରରେ ଦୂଷିତ, ବ୍ୟକ୍ତି-କୈନ୍ଦ୍ରିକ-ଅଭିମାନରେ ସ୍ୱାର୍ଥାନ୍ଧ ଓ ଯୌନ-ସ୍ୱୈରାଗ୍ରହର ପଲ୍ୱଲରେ ପଙ୍କିଳ । ଅଥଚ ସାହିତ୍ୟିକ ପତ୍ର-ପତ୍ରିକାମାନଙ୍କରେ ଏସବୁ କବିତା ଯେଉଁ ସମ୍ମାନ ପାଉଅଛନ୍ତି, ସେ ସମ୍ମାନ ଜଡ଼ବାଦ ପ୍ରତି ଆମ୍ଭମାନଙ୍କର ସ୍ୱେଚ୍ଛାଦତ୍ତ ଉପାସନ ଛଡ଼ା ଆଉ କଅଣ ହୋଇପାରେ ?" (୪୫) "କଳିଙ୍ଗର ସାହିତ୍ୟରୁ ଜଡ଼ବାଦୀ ଚିନ୍ତାଧାରାର ବିଲୋପ ସାଧନ ଓ ତହିଁରେ କଳାମୟତା ଓ ସଙ୍ଗୀତମୟତାର ପୁନଃପ୍ରବର୍ତ୍ତନ ହିଁ ଆମ୍ଭମାନଙ୍କର ଧ୍ୟେୟ ।" (୪୬) ଏହି ଲକ୍ଷ୍ୟ ପୂରଣ ଲାଗି ଭଞ୍ଜ-ଜୟନ୍ତୀ ଓ କୋଣାର୍କ ଜୟନ୍ତୀ ପାଳନର ବ୍ୟବସ୍ଥା କରାଯାଇଥିଲା । ବିଚ୍ଛନ୍ଦଚରଣ କହନ୍ତି, "କବି ସମ୍ରାଟ ଓ କୋଣାର୍କ କଳିଙ୍ଗ-କୃଷ୍ଟିର କମନୀୟତମ ପ୍ରକାଶ । ଏ ଦୁହିଁଙ୍କ ଦ୍ୱାରା ବ୍ୟଞ୍ଜିତ ଜାତୀୟ ସାଧନାର ଭଙ୍ଗିମା ବିଷୟରେ କଳିଙ୍ଗବାସୀଙ୍କୁ ଉଦ୍‌ବୁଦ୍ଧ କରିଦେଲେ ଜାତୀୟ ଜାଗରଣ ପାଇଁ ଆଉ କିଛି କରିବାକୁ ପଡ଼ିବ ନାହିଁ ।" (୪୭) ତେଣୁ "ଏ ସବୁ ଜୟନ୍ତୀକୁ କେବଳ ସ୍ମୃତି-ପୂଜା ଉତ୍ସବ ବୋଲି ଜ୍ଞାନ କଲେ ଭ୍ରମ ହେବ । ବିଜାତୀୟ ମନୋଭାବ ଦ୍ୱାରା ବିଦୂଷିତ ଅଧୁନାତନ ଜାତୀୟ ଆଭିମୁଖ୍ୟକୁ ଆମୂଳଚୂଳ ପରିବର୍ତ୍ତନ କରିବାହିଁ ଏସବୁ ଜୟନ୍ତୀର ଲକ୍ଷ୍ୟ" । (୪୮) ଏ ସବୁ ଜୟନ୍ତୀ କେବଳ ସ୍ମୃତିପୂଜା ଉତ୍ସବ ନୁହେଁ କିମ୍ବା ଏ ଜୟନ୍ତୀମାନଙ୍କରେ ଆୟୋଜିତ ଗୀତ, ବାଦ୍ୟ, ନୃତ୍ୟ ଆଦି "ସାଂସ୍କୃତିକ ବିନୋଦନ କେବଳ ଲଘୁ ଆମୋଦ ପ୍ରମୋଦ ପାଇଁ ଉଦ୍ଦିଷ୍ଟ ନୁହେଁ ।" (୪୯) ଉପସ୍ଥାପିତ ସାଂସ୍କୃତିକ ବିନୋଦନ ମାଧ୍ୟମରେ ପ୍ରାଚୀନ କଳାର ଉଦ୍ଧାର ଓ ପ୍ରସାର ହିଁ କଳିଙ୍ଗ ଭାରତୀ ଅନୁଷ୍ଠାନର ଲକ୍ଷ୍ୟ । କଳା ସଙ୍ଗୀତମୟ ପ୍ରାଚୀନ ପରମ୍ପରାର ଗୌରବ ପ୍ରତି ଶିକ୍ଷିତ ମହଲର ଦୃଷ୍ଟି ଆକର୍ଷଣ କରିବା, ତହିଁରେ ସେମାନଙ୍କର ରୁଚି ଉତ୍ପନ୍ନ କରିବା ଓ ଏହି ଉପାୟରେ ଜାତୀୟ ପରମ୍ପରାକୁ ଜୀବନ୍ତ କରିବା ବିଚ୍ଛନ୍ଦଚରଣଙ୍କ କର୍ମଯୋଜନା ଥିଲା ।

ବାଞ୍ଛାନିଧିଚରଣଙ୍କର ଏକ ସ୍ୱପ୍ନ ଥିଲା ଯେ ଦିନେ କଳିଙ୍ଗ ଭାରତୀ ଅନୁଷ୍ଠାନର ନିଜସ୍ୱ ଭକ୍ତ-ମଣ୍ଡପରେ ଭକ୍ତ-ଜୟନ୍ତୀ ପାଳିତ ହେବ । ତାଙ୍କର ଏହି ସ୍ୱପ୍ନକୁ ବାସ୍ତବ ରୂପ ଦେବା ଲାଗି କଳିଙ୍ଗ ଭାରତୀର ସାଧକ ଗୋଷ୍ଠୀଙ୍କ ମଧ୍ୟରୁ ପ୍ରମୁଖ ବ୍ୟକ୍ତି ସର୍ବଶ୍ରୀ ରଜତ କୁମାର କର, ଡକ୍ଟର କଳ୍ପପ୍ରସାଦ ମିଶ୍ର, ଶରତ କୁମାର କର, ଇଂଜିନିୟର କ୍ୟାପ୍ଟେନ ଚନ୍ଦ୍ରଶେଖର ନନ୍ଦ, ଶୈଳେଶ୍ୱର ନନ୍ଦ, ପୁରୁଷୋତ୍ତମ ପଟ୍ଟନାୟକଙ୍କ ଉଦ୍ୟମ ଫଳରେ କଟକ ମିଶନ ରୋଡ (ଚଣ୍ଡୀମନ୍ଦିର ନିକଟବର୍ତ୍ତୀ ସ୍ଥାନ)ରେ ଭକ୍ତ-ମଣ୍ଡପ ସ୍ଥାପିତ ହେଲା । ୧୯୭୧ ମସିହା ଅଗଷ୍ଟ ମାସ ଉଣିଶ ତାରିଖରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ଭକ୍ତ-ଭବନର ଶିଳାନ୍ୟାସ କଲେ । ୧୯୭୫ ମସିହାରେ ଭକ୍ତ-ମଣ୍ଡପ ନିର୍ମାଣ କାର୍ଯ୍ୟ ସଂପନ୍ନ ହେଲା । ଭକ୍ତ-ମଣ୍ଡପ ପରିସର ମଧ୍ୟରେ ବାଞ୍ଛାନିଧିଚରଣଙ୍କ ନାମରେ ନାମିତ ଓଡ଼ିଶୀ ଭବନ ଏବଂ କଳିଙ୍ଗ ଭାରତୀ ଗ୍ରନ୍ଥାଗାର ନିମିତ୍ତ ସ୍ୱତନ୍ତ୍ର ଗୃହ ନିର୍ମାଣ ହେଲା । କଳିଙ୍ଗ ଭାରତୀ ଭକ୍ତ-ମଣ୍ଡପ ପ୍ରାଙ୍ଗଣରେ ବାର୍ଷିକ ଭକ୍ତ-ଜୟନ୍ତୀ ଯଥା ଆଡ଼ମ୍ବରରେ ଉତ୍ସାହ ସହିତ ପାଳିତ ହେଲା ଓ ବାଞ୍ଛାନିଧିଚରଣ ଶିଷ୍ୟ ମଣ୍ଡଳୀଙ୍କ ସ୍ୱଭାବ-ସୁଲଭ ଆବେଗପୂର୍ଣ୍ଣ ବକ୍ତୃତାର କଳା ପାରଦର୍ଶିତାରେ ମୁଗ୍ଧ ଶ୍ରୋତାଗଣଙ୍କ କରତାଳରେ ବାରବାଟୀ ଦୁର୍ଗର ଅଦୂରବର୍ତ୍ତୀ ଏହି ପ୍ରାଙ୍ଗଣ ପ୍ରତିଧ୍ୱନିତ ହେଲା । ବାଞ୍ଛାନିଧିଚରଣ ନିଜ ଜୀବଦ୍ଦଶାରେ କଳିଙ୍ଗ ଭାରତୀ ଭକ୍ତ-ମଣ୍ଡପରେ ଭକ୍ତ-ଜୟନ୍ତୀ ଦେଖି ପାରି ନଥିଲେ । କିନ୍ତୁ ତାଙ୍କ ଜୀବନ କାଳରେ ଭକ୍ତ-ଜୟନ୍ତୀ ଉତ୍ସବର କ୍ରମବର୍ଦ୍ଧିଷ୍ଣୁ ରୂପ ଦେଖି ସେ ଆତ୍ମ-ସନ୍ତୋଷ ପ୍ରକାଶ କରିଥିଲେ ।

୧୯୬୫ ମସିହା ଦ୍ୱାଦଶ ବାର୍ଷିକ ଭକ୍ତ-ଜୟନ୍ତୀ ଉତ୍ସବର ପ୍ରଥମ ଦିବସରେ ପୌରୋହିତ୍ୟ କରି ବାଞ୍ଛାନିଧିଚରଣ କହିଥିଲେ "ବାରବର୍ଷ ତଳେ ଶିକ୍ଷିତ ସମାଜରେ ଭକ୍ତ-ପୂଜା ଉପହାସର ସାମଗ୍ରୀ ଥିଲା । କିନ୍ତୁ ଏବେ ଚକ ପୂରାପୂରି ଘୂରି ଯାଉଛି, ଏବଂ ଅତୀତର ଭକ୍ତ-ଉପହାସକମାନେ ଆଜି ଭକ୍ତ-ଉପାସକରେ ପରିଣତ ହୋଇ ଅଛନ୍ତି ।" ଚତୁର୍ଦ୍ଦଶ ବାର୍ଷିକ ଭକ୍ତ-ଜୟନ୍ତୀ ଅଭିଭାଷଣରେ ବାଞ୍ଛାନିଧିଚରଣ କହିଥିଲେ, "ଚଉଦ ବର୍ଷ ହେଲା କଟକରେ ଭକ୍ତ-ଜୟନ୍ତୀ ନିୟମିତ ଭାବରେ ଅନୁଷ୍ଠିତ ହେବା ଫଳରେ ଭକ୍ତ-ନଗର, ଭୁବନେଶ୍ୱର, ବାଲେଶ୍ୱର, ହୀରାକୁଦ, ବୁର୍ଲା, କେନ୍ଦୁଝର, ରାଉରକେଲା ଆଦି ସ୍ଥାନରେ ମଧ୍ୟ ଲୋକେ ସମାରୋହରେ ଭକ୍ତ-ଜୟନ୍ତୀ ଅନୁଷ୍ଠିତ କରିବାରେ ଆଗ୍ରହୀ ହେଲେଣି । "ଏହାକୁ ମୁଁ ମୋ ଅନୁଷ୍ଠାନ ପକ୍ଷରୁ ସ୍ୱାଗତ କରି ଆସିଅଛି ।" ବାଞ୍ଛାନିଧିଚରଣ ଉତ୍କଳ ଜାତୀୟତାର ଏକ ସୁଦୃଢ଼ ବିଜୟ ସ୍ତମ୍ଭ । ତ୍ରୟୋଦଶ ବାର୍ଷିକ ଅଭିଭାଷଣରେ ସେ କହିଥିଲେ "କଳିଙ୍ଗଭାରତୀ ଭକ୍ତ-ଜୟନ୍ତୀ ଆଜି ବ୍ୟାପକ ଜାତୀୟ ମହୋତ୍ସବରେ ପରିଣତ ହୋଇଅଛି ।"

୧୯୬୯ ମସିହାରେ "ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ସାହିତ୍ୟ ପରମ୍ପରାର ପୁନର୍ଜନ୍ମ ଆରମ୍ଭ ହୋଇଅଛି ଏବଂ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେଉଁ ମହତୀ ଭାରତୀୟ ନା ସଂସ୍କୃତ ପରମ୍ପରାର ସମର୍ଥ ପ୍ରତିନିଧି, ତାହା ପୁନଃ-ପ୍ରତିଷ୍ଠା ପଥରେ ଜୟଯାତ୍ରା କରୁଅଛି ।" କହି ସେ ଖୁବ୍ ସନ୍ତୋଷ ପ୍ରକାଶ କରିଥିଲେ ।

କାଳିନ୍ଦୀଚରଣଙ୍କର ଦୃଢ଼ ବୋଧ ହୋଇଥିଲା ଯେ, ତାଙ୍କ ପ୍ରବର୍ତ୍ତିତ ଆନ୍ଦୋଳନ ସଫଳ ହୋଇଛି । ଦେଶବ୍ୟାପୀ ଜୟନ୍ତୀ-କୋଳାହଳରେ ଜାତିର ନିଦ୍ରାଭଙ୍ଗ ହୋଇଛି, ସୁପ୍ତ ସିଂହ ଜାଗ୍ରତ ହୋଇଛି । ଜାତି ଆଖିରୁ ବିଜାତୀୟତାର ପରଳ ଖସି ପଡ଼ୁଛି ଓ ସେ ନିଜ ଭାରତୀୟ ପରମ୍ପରା-ସମ୍ମତ ଭଦ୍ରଦୃଷ୍ଟି ଲାଭ କରିଛି । ଯେଉଁ ପରମ୍ପରା ଛିନ୍ନ ହେବାକୁ ଯାଉଥିଲା, ତାହା ସଂଯୋଜିତ ହୋଇଛି ଏବଂ ଓଡ଼ିଆ ଜାତି ପ୍ରାଣରେ ନବଜାଗରଣର ଶୁଭଶଙ୍ଖ ଧ୍ୱନି ଶୁଭୁଛି । ସେ କିନ୍ତୁ ଏ ସଫଳତାକୁ ପ୍ରାଥମିକ ସଫଳତା ବୋଲି ଜ୍ଞାନ କରୁଥିଲେ । ଭବିଷ୍ୟତର ଅନେକ ସ୍ୱପ୍ନ ଓ କର୍ମଯୋଜନା ସେ ଲିପିବଦ୍ଧ କରିଦେଇ ଯାଇଛନ୍ତି ଏବଂ ପୂର୍ଣ୍ଣପ୍ରାଣରେ ବିଶ୍ୱାସ କରିଛନ୍ତି ଯେ ଓଡ଼ିଆ ଜାତିର ଶକ୍ତିଧର ଦାୟାଦମାନେ ତାଙ୍କ ଉତ୍ତର ଦାୟିତ୍ୱ ବହନ କରି ସେହି ସ୍ୱପ୍ନ ଓ କର୍ମଯୋଜନାକୁ ଅବଶ୍ୟ ସଫଳ କରିବେ ।



# କବି ପ୍ରତିଭା

ବିଚ୍ଛନ୍ଦଚରଣଙ୍କ ପିତାମହ ସତ୍ୟବାଦୀ ପଟ୍ଟନାୟକ କବି ଥିଲେ । ସେ ଯାତ୍ରାଦଳ ଓ ଗୋଟିପୁଅ ଦଳ ରଖି ସାହିତ୍ୟ-ସଙ୍ଗୀତ-ଚର୍ଚ୍ଚାରେ ସେକାଳର ଆଭିଜାତ୍ୟ ପୂର୍ଣ୍ଣ ଜୀବନ ଯାପନ କରୁଥିଲେ । ବିଚ୍ଛନ୍ଦଚରଣଙ୍କ ମାତା ରାଧାରାଣୀ ଦେବୀ ଢଗଢମାଳୀର ପ୍ରଗଳ୍‌ଭ ଗଳ୍ପାଧର ଥିଲେ । କଥା କଥାକେ ତାଙ୍କ ତୁଣ୍ଡରୁ ଦୃଷ୍ଟାନ୍ତ, ଉପମା ଉତ୍‌ପ୍ରେକ୍ଷା ମୂଳକ ଢଗଢମାଳୀ ସବୁ ବୃଷ୍ଟି ହେଉଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଧମନୀରେ ପ୍ରଖର କବିତାର ସ୍ରୋତ ଛୁଟୁଥିଲା । ବିଚ୍ଛନ୍ଦଚରଣଙ୍କ ପିତା ଗୋଲକକୃଷ୍ଣ ଛନ୍ଦାର୍ଥୀ, ଛନ୍ଦ-ରସିକ ଓ ଗାନପ୍ରିୟ ବ୍ୟକ୍ତି ଥିଲେ । ସ୍ୱାନ୍ତସୁଖାୟ ତାଙ୍କ କଣ୍ଠରୁ ଛାନ୍ଦ ଓ ଓଡ଼ିଶୀ ସଙ୍ଗୀତ ଝରି ପଡ଼ୁଥିଲା । ସେକାଳର ସମ୍ଭ୍ରାନ୍ତ ପରିବାରମାନଙ୍କର କଳା, ସାହିତ୍ୟ, ସଙ୍ଗୀତ ଚର୍ଚ୍ଚା ଏକ ବିଶେଷ ଭୂଷଣ ରୂପେ ଗୃହୀତ ହେଉଥିଲା । ବରଂ ତାହା ଥିଲା ସେମାନଙ୍କର ଯଥାର୍ଥ କୁଳୀନତାର ପରିଚୟ । କୁଳବଧୂମାନେ ଚିତା ଲେଖିବା, ମୁରୁଜ ପକାଇବା, ଲୁଗା କୁଞ୍ଚ କରିବା, ଚନ୍ଦନ ଘୋରି ସଜାଡ଼ି ରଖିବା, ସୁସ୍ୱାଦୁ ଆହାର ସହିତ ପିଠାପଣା ପ୍ରସ୍ତୁତ କରିବା, ଘର ସଜାଡ଼ିବା, ନିଜର ବେଶ ପରିପାଟୀ ଓ କେଶ ବିନ୍ୟାସ କରିବା ତଥା ବିବିଧ ହସ୍ତଶିଳ୍ପ ପ୍ରସ୍ତୁତ କରିବାରେ ଅପୂର୍ବ କଳାମୟ ପରମ୍ପରାକୁ ବଞ୍ଚାଇ ରଖିଥିଲେ । ଗୃହଚଳଣି ଗୃହିଣୀରୁ ସେମାନଙ୍କ କଳାମୟ ଆଭିଜାତ୍ୟ ଫୁଟି ଉଠୁଥିଲା । ଆତ୍ମସନ୍ତୋଷ ଓ ସ୍ୱାଭିମାନରେ ଫୁଲି ଉଠୁଥିବା କୌଳୀନ୍ୟ ସେମାନଙ୍କୁ ଆବୋରି ରହିଥିଲା । ଏହି କୁଳୀନତାର ଦାୟାଦ ହୋଇ ଜନ୍ମ ହୋଇଥିଲେ ବିଚ୍ଛନ୍ଦଚରଣ । ତେଣୁ କଳାମୟତା ଓ ପ୍ରାଣବନ୍ତ କବିତା ତାଙ୍କ ଅସ୍ଥିମଜ୍ଜାଗତ ହୋଇ ଉଠିଲା । ବରଂ ଏହା କହିବା ଅଧିକ ସମୀଚୀନ ହେବ ଯେ, ଏକ କଳାପୂର୍ଣ୍ଣ କବିତ୍ୱମୟ ଅସାମାନ୍ୟ ସ୍ଥିତିରୁ ସେ ତାଙ୍କ ଜୀବନର ସମସ୍ତ ଶକ୍ତି, ଆବେଗ, ପୂର୍ବୋଦ୍ଦୃଷ୍ଟି ଲାଭ କରୁଥିଲେ । ଏହା ସଙ୍ଗକୁ ତାଙ୍କ ବଂଶ ପରମ୍ପରାରେ ପ୍ରତିଷ୍ଠିତ ବିଷ୍ଣୁ-ବୈଷ୍ଣବ-ଭକ୍ତି ତାଙ୍କ ବ୍ୟକ୍ତିତ୍ୱର ଅଙ୍ଗୀଭୂତ ସମ୍ପଦ ହୋଇ ରହିଥିଲା ।

ବିଚ୍ଛନ୍ଦଚରଣଙ୍କୁ ଲକ୍ଷ୍ୟ କରି ମହାପାତ୍ର ନୀଳମଣି ସାହୁ ଯେଉଁ ତାତ୍ପର୍ଯ୍ୟପୂର୍ଣ୍ଣ ଉକ୍ତି ଉଲ୍ଲେଖ କରିଛନ୍ତି ତାହା ଉଦ୍ଧାର କରିବା ଏଠାରେ ପ୍ରାସଙ୍ଗିକ ମନେ କରୁଛୁ ।

ସ୍ୱଚ୍ଛନ୍ଦଚରଣ "ମୂଳତଃ ଥିଲେ କବି ଓ ପ୍ରେମିକ ଏବଂ ଏହି ପ୍ରେମିକତା ହିଁ ତାଙ୍କ ହୃଦୟକୁ ଶେଷ ଅବଧି ଭକ୍ତିଭାବ ପରିପୂର୍ଣ୍ଣ କରି ରଖିଥିଲା । ତାଙ୍କର ବାହ୍ୟ କର୍ମମୟ ଜୀବନ ଓ ଜୀବନ ଯାପନର ଆଦର୍ଶକୁ ମଧ୍ୟ ଏହି ପ୍ରେମଭକ୍ତିପୂର୍ଣ୍ଣ ଅନ୍ତର ନିୟନ୍ତ୍ରଣ କରୁଥିଲା । ଦେଶ ଥିଲା ତାଙ୍କ ଆଗରେ ଦେଶମାତୃକା । ସାହିତ୍ୟ ଥିଲା ସାରସ୍ୱତ ସାଧନା ।" ଅର୍ଥାତ୍ ତାଙ୍କ ସହଜ ସ୍ଥିତିଗତ କବିତ୍ୱମୟ ଦୃଷ୍ଟିରେ ସେ ନିଜ ଦେଶକୁ ଏକ ଭୌଗୋଳିକ ଭୂମି ବୋଲି ଗ୍ରହଣ କରୁ ନ ଥିଲେ । ସେ ମଣୁଥିଲେ ଯେ ଦେଶ ହେଉଛି ତାଙ୍କ ପାଇଁ ଜୀବନ୍ତ ଜନନୀ ଓ ଦେଶସେବା ହେଉଛି ମାତୃସେବା ବା ମାତୃ ଆରାଧନା । ସାହିତ୍ୟ ସେବାକୁ ସେ ନିଷ୍କାମ ବାଣୀ-ଆରାଧନା ଛଡ଼ା ଅନ୍ୟ କେଉଁ ଦୃଷ୍ଟିରେ ଦେଖି ନାହାନ୍ତି । ଅନ୍ୟ ଭାଷାରେ କହିଲେ ତାଙ୍କ ଦେଶସେବା ଓ ସାହିତ୍ୟ ସେବା ଥିଲା ଏକ ସର୍ବତୋଭଦ୍ର ଆରାଧନା-ଚେତନାର ପରିସ୍ଫୁରଣ ।

ଏହା ନିର୍ଭୁଲ ସତ୍ୟ ଯେ ସ୍ୱଚ୍ଛନ୍ଦଚରଣ ମୂଳତଃ କବି ଥିଲେ ଏବଂ ପ୍ରେମିକ ଥିଲେ । ସ୍ୱଚ୍ଛନ୍ଦଚରଣଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ମୂଳବୀଜଟିକୁ ଖୋଜି ପାଇବା ପାଇଁ ମହାପାତ୍ର ନୀଳମଣି ସାହୁ ସ୍ୱଚ୍ଛନ୍ଦଚରଣଙ୍କ ଅବଚେତନର ମୂଳଗଣ୍ଠିରକୁ ଖୋଲି, ଅଶ୍ରାନ୍ତ ସ୍ଥିର କରିଛନ୍ତି ଯେ ସମସ୍ତ କୃତୀପୁରୁଷମାନଙ୍କ ପରି ସ୍ୱଚ୍ଛନ୍ଦଚରଣଙ୍କ ଦ୍ରୁମାସ୍ଥିତ ବ୍ୟକ୍ତିତ୍ୱର ମୂଳବୀଜଟି ହେଉଛି "ପ୍ରେମ" । "ପ୍ରେମ କାହା ପ୍ରତି" ? ଏହି ପ୍ରଶ୍ନର ଉତ୍ତରରେ ସେ କହିଛନ୍ତି "ପ୍ରେମ କେହି ଜଣଙ୍କ ପ୍ରତି, ତା'ପରେ ସମସ୍ତଙ୍କ ପ୍ରତି— ଏବଂ ପରିଶେଷରେ ସେଇ ସର୍ବମୟ ଈଶ୍ୱରଙ୍କ ପ୍ରତି ।" ପ୍ରେମର ଏହି ତ୍ରିବିଧ ପର୍ଯ୍ୟାୟ—ଉତ୍ତରୋତ୍ତର ବିକଶିତ ପର୍ଯ୍ୟାୟକୁ ଯଥାକ୍ରମେ ବୈୟକ୍ତିକ, ସାର୍ବିକ ଓ ସାର୍ବଭୌମିକ ନାମରେ ଆଖ୍ୟାତ କରାଯାଇପାରେ । ବୈୟକ୍ତିକ ପ୍ରେମର ସୂକ୍ଷ୍ମମୟ ପୂର୍ତ୍ତି ସାର୍ବିକରେ ଏବଂ ସାର୍ବିକର ସୂକ୍ଷ୍ମମୟ ପୂର୍ତ୍ତି ସାର୍ବଭୌମିକ ପ୍ରେମରେ ଘଟିଥାଏ । କେଣୁ ପ୍ରେମର ଏହି ତ୍ରିବିଧ ପର୍ଯ୍ୟାୟକୁ ଏକ ଜୀବନ ସୂତ୍ରରେ ଗ୍ରଥିତ କରାଯାଇପାରେ । ସ୍ୱଚ୍ଛନ୍ଦଚରଣଙ୍କ ଜୀବନଛନ୍ଦରେ ଏହି ତ୍ରିବିଧ ପର୍ଯ୍ୟାୟ-ବାଚୀ ପ୍ରେମ ରୂପାୟିତ ଓ ରସାଣିତ ହୋଇଥିଲା ଏବଂ ଏହି ରୂପ ଓ ରସ ମଧ୍ୟ ତାଙ୍କ କର୍ମଜୀବନର ମୂଳ ପ୍ରେରଣା ଥିଲା ।

ବୈୟକ୍ତିକ ପ୍ରେମର ତୀବ୍ର ଅନୁଭବ ସେ ଲଭ କଲେ ଆଦ୍ୟ ଯୌବନରେ । ସେହି ତୀବ୍ରତାରେ ସେ ମୁହ୍ୟମାନ ହୋଇ ନିଜ ସତ୍ତା ହରାଇ ବସିଲେ । ଏକ ବର୍ଷରୁ ଊର୍ଦ୍ଧ୍ୱ ପ୍ରେମୋନ୍ମାଦ ଅବସ୍ଥାରେ ବୁଡ଼ି ରହିଲେ । ସ୍ମୃତି ହଜିଗଲା, ଇନ୍ଦ୍ରିୟମାନଙ୍କ ଗ୍ରାହିକା ଶକ୍ତି ହଜିଗଲା, ଆଶା ନିରାଶାର ଘାତପ୍ରତିଘାତ ହଜିଗଲା ।

ଆତ୍ମବିସ୍ମୃତିର ଏକ ଚରମ ଅବସ୍ଥା ସେ ଅନୁଭବ କଲେ ଦିନେ ନୁହେଁ, ମାସେ ନୁହେଁ, ପୂର୍ଣ୍ଣ ଏକ ବର୍ଷ । ସେ ତ ଜାଗ୍ରତ ଅବସ୍ଥାରେ ନଥିଲେ, କିନ୍ତୁ ସେ କେଉଁ ସ୍ୱପ୍ନ ଅବସ୍ଥାରେ ଅଥବା ଘନ ଘୋର ସୁଷୁପ୍ତି ଅବସ୍ଥାରେ ମଜ୍ଜି ରହିଥିଲେ ତାହା କହିବା ତାଙ୍କ ଛଡ଼ା ଆଉ କାହା ପକ୍ଷରେ ସମ୍ଭବ ନୁହେଁ । ଭାଗ୍ୟକୁ ସେ କେବେ କଥୋପକଥନ ବେଳେ ତାଙ୍କ ଶିଷ୍ୟମାନଙ୍କ ପାଖରେ ସେ ଅନୁଭୂତି କଥା ପ୍ରକାଶ କରିଛନ୍ତି । ମୁଁ ଶୁଣିଛି, ସେ କହିଛନ୍ତି ଯେ ଆମେ ଯାହାକୁ ତାଙ୍କ ପ୍ରେମୋନ୍ମାଦ ଅଚେତନ ଅବସ୍ଥା ବୋଲି କହୁଛୁ, ତାହା ଥିଲା ତାଙ୍କ ପାଇଁ ଏକ ପୂର୍ଣ୍ଣଚେତନ ଘନାନନ୍ଦମୟ ସ୍ୱପ୍ନିଳ ଅବସ୍ଥା । ତାହାକୁ 'ସ୍ୱପ୍ନମୟ ଅନୁଭୂତି' କହିବାର କିଛି ଯଥାର୍ଥ୍ୟ ନାହିଁ । ବରଂ ତାହା ଥିଲା ତାଙ୍କ ପାଇଁ ଏକ ପୂର୍ଣ୍ଣ ଜାଗ୍ରତ ଅବସ୍ଥା, ଅବଶ୍ୟ ଅନ୍ୟ ଏକ ଜଗତରେ ; ଆଉ ଏକ ଭିନ୍ନ ଚେତନାର ସଙ୍ଗତିରେ । ସେ କହିଛନ୍ତି, "ମୁଁ ଯେଉଁ ଜଗତରେ ସେତେବେଳେ ବିଚରଣ କରୁଥିଲି, ତାହା ଏକ ସୂକ୍ଷ୍ମ ଜଗତ । ସେଠାରେ କାଳ-ପ୍ରବାହର ତୀବ୍ରତା ଅନୁଭୂତ ହୁଏନାହିଁ । ନାଃଶଙ୍କ ନିରୁପଦ୍ରବରେ ଏକ ସାବଲୀଳ ଚେତନା ସେଠାରେ ବିଳାସ କରୁଥାଏ ; ପୂର୍ଣ୍ଣ ଯୌବନ, ପୂର୍ଣ୍ଣ ବସନ୍ତ, ପୂର୍ଣ୍ଣ ସୌନ୍ଦର୍ଯ୍ୟ ଓ ପୂର୍ଣ୍ଣ ଆତ୍ମୀୟତାର ଅଖଣ୍ଡାନନ୍ଦ ପ୍ରବାହରେ ମଜ୍ଜି ରହିବା ସତେ କି ପୂର୍ଣ୍ଣାନୁଭୂତି ।" ବିଚ୍ଛନ୍ଦଚରଣ କହୁଥିଲେ, କବି କଳାକାରମାନେ ନିଜ ଜ୍ଞାତସାରରେ ହେଉ ଅଥବା ଅଜ୍ଞାତସାରରେ ହେଉ, ଏହି କବିତାମୟ, ପ୍ରେମମୟ ଭାବଲୋକରୁ ହିଁ ପ୍ରେରଣା ଲାଭ କରିଥାନ୍ତି । ଏଭଳି ଏକ ଦୁର୍ଲଭ ଜଗତରେ ଅପୂର୍ବ ଅନୁଭୂତି ଲାଭ କରିଛନ୍ତି ବୋଲି ସେ ନିଜକୁ ଭାଗ୍ୟବାନ ମନେ କରୁଥିଲେ । ସେଠାରେ ପ୍ରେମ ଓ କବିତା ଦୁଇଟି ବସ୍ତୁ ନୁହେଁ । ପ୍ରେମ ହିଁ କବିତା ଓ କବିତା ହିଁ ପ୍ରେମ । ତାହାକୁ 'ଗନ୍ଧର୍ବଲୋକ' ବୋଲି ନାମିତ କଲେ ବିଚ୍ଛନ୍ଦଚରଣ ସନ୍ତୁଷ୍ଟ ହେଉ ନଥିଲେ । ସେ କହୁଥିଲେ, ତାହା ଗନ୍ଧର୍ବମାନଙ୍କ ଭୂମି ନୁହେଁ, ତାହା 'ସାରସ୍ୱତ ଲୋକ' ଅର୍ଥାତ୍ ସରସ୍ୱତୀଙ୍କ ବିଭୂତିମୟ ଲୋକ । ବିଚ୍ଛନ୍ଦଚରଣଙ୍କ ସାର୍ଦ୍ଧ ଦିନ ବ୍ୟାପୀ ପ୍ରେମୋନ୍ମାଦ ଅବସ୍ଥା ତାଙ୍କ ପାଇଁ ଥିଲା ଏକ ନିବିଡ଼ ଆଧ୍ୟାତ୍ମିକ ଅନୁଭୂତି । ଶ୍ରୀଅରବିନ୍ଦଙ୍କ ଦୃଷ୍ଟିରୁ କହିଲେ– ବିଚ୍ଛନ୍ଦଚରଣ ଯେଉଁ ଭାବଲୋକର ସନ୍ଧାନ ପାଇଥିଲେ, ତାହା ବୋଧହୁଏ ଗାନ୍ଧର୍ବୀୟ ସାରସ୍ୱତଲୋକ ।

କୂଅରେ ପଡ଼ି ଉଦ୍ଧାର ହିବା ପରଠାରୁ ବିଚ୍ଛନ୍ଦଚରଣଙ୍କ ବୈୟକ୍ତିକ ପ୍ରେମର ଇତିଶ୍ରୀ ହୋଇଗଲା କହିଲେ ଚଳେ । ସେ ଉନ୍ମାଦମୁକ୍ତ ହୋଇଗଲେ, ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଗଲେ ଓ ବୈୟକ୍ତିକ ପ୍ରେମର ଅନ୍ଧତାମସ ଦ୍ରବିଳରୁ ନିଜକୁ ମୁକୁଳାଇ ନେଲେ । କିନ୍ତୁ ସେ ସମୟର ସମସ୍ତ ଅନୁଭବ ତାଙ୍କର ସ୍ମୃତି-ସମ୍ପଦ ହୋଇ ରହିଗଲା । ତାଙ୍କ କବି ଜୀବନର ଉର୍ବର ଉପାଦାନ ରୂପେ ତାହା କାର୍ଯ୍ୟ କରିଥିଲେ

ହେଁ ସେ ଅନୁଭୂତିର ବିସ୍ତାର ସ୍ୱାଧୀନତା ନିର୍ମୂଳ ସ୍ତରରେ ଅପସରିଗଲା । ବଚ୍ଛନ୍ଦ-ଚରଣ ନିଜ ଜୀବନର ନୂତନ ଦିଗନ୍ତରେ ପ୍ରେମ-ଚନ୍ଦ୍ରୋଦୟ ଦେଖିଲେ । ତାହା ହେଉଛି ଦେଶମାତୃକା ପ୍ରେମ-ଏକ ସାର୍ବିକ ପ୍ରେମ ।

ଦେଶ ପାଇଁ ସେ ବଞ୍ଚିଲେ, ପ୍ରତି ମୁହୂର୍ତ୍ତ ବଞ୍ଚିଲେ । ଜୀବନର ସକଳ ପ୍ରଲୋଭନ ଓ ପ୍ରତ୍ୟାଶାକୁ ଜଳାଞ୍ଜଳି ଦେଇ ବଞ୍ଚିଲେ, କର୍ମ କଲେ, ସଂଗଠନ ଗଢ଼ିଲେ, ଆନ୍ଦୋଳନ କଲେ, ମୁହଁ ଖୋଲି ପ୍ରତିବାଦ କଲେ, ରଣହୁଁକାର ଶୁଣାଇଲେ ଓ ନିଜର ପରିବାର, ଅନୁଷ୍ଠାନକୁ ସମର୍ପଣ କରି ଅନୁପମ ଜାତୀୟ ପ୍ରୀତିର ନିଦର୍ଶନ ଉପସ୍ଥାପନ କଲେ । ଏ ଜାତୀୟ ପ୍ରୀତି ସମ୍ବଳିତ କବିତା ଅଙ୍ଗୀଭୂତ ହୋଇ ରହିଲା । ତେଣୁ ପ୍ରେମ କବିତା ରଚନା କରିବା ସଙ୍ଗେ ସଙ୍ଗେ ଦେଶ-ପ୍ରୀତି ମୂଳକ କବିତା ମଧ୍ୟ ରଚନା କଲେ । ବୈୟକ୍ତିକ ପ୍ରେମ ସାଧନା ପରି ତାଙ୍କ ସାର୍ବିକ ପ୍ରେମ-ସାଧନା ଥିଲା ନିବିଡ଼, ଅକୁଣ୍ଠ ଓ ଆନ୍ତରିକ । ଉଭୟ ପ୍ରକାର ପ୍ରେମ-ସାଧନାରେ ମହାପାତ୍ର ନୀଳମଣି ସାହୁଙ୍କ ଭାଷାରେ, ବଚ୍ଛନ୍ଦଚରଣ ଥିଲେ "ଏକ ଗଭୀର ଉନ୍ମାଦନାମୟ ନିଶାଗ୍ରସ୍ତ ଅଚୈତନ୍ୟମୟ ପ୍ରେମାନୁଭୂତିରେ ଜର୍ଜରିତ ହୃଦୟ" ବ୍ୟକ୍ତି । ଏହିଭଳି ତନ୍ମୟ ତଲ୍ଲୀନ ହୃଦୟ ନଥିଲେ କେହି କେବେ "ସର୍ବାଟ ଚିନ୍ମୟମୟ ପୁରୁଷୋତ୍ତମଙ୍କ ଭାବକୁ ପ୍ରାପ୍ତ ହୋଇପାରେ ନାହିଁ" କିମ୍ବା "ସେଇ ଆତ୍ମକୁ ଉନ୍ମୁଖ ହୋଇପାରେ ନାହିଁ" । ମହାପାତ୍ର ନୀଳମଣି ସାହୁ ଯଥାର୍ଥରେ କହିଛନ୍ତି, "ପ୍ରେମାନୁଭୂତି ଏକ ଅସ୍ତିବାଦୀ ଏଷଣାର ମୂଳକ" । ବଚ୍ଛନ୍ଦଚରଣଙ୍କ ଜୀବନରେ ଏହି ଅସ୍ତିବାଦୀ ଏଷଣା କାର୍ଯ୍ୟ କରୁଥିଲା ଓ ତାଙ୍କ କବିତାର ଛନ୍ଦେ ଛନ୍ଦେ ଏହି ଅସ୍ତିବାଦୀ ଏଷଣାର ସ୍ପନ୍ଦ ପ୍ରତିଫଳିତ ହୋଇଛି ।

ବଚ୍ଛନ୍ଦଚରଣଙ୍କ ପ୍ରିୟଶିଷ୍ୟ ଶ୍ରୀ ରଜନୀକୁମାର କର ଗୁରୁଦେବଙ୍କ ସ୍ମୃତି ତର୍ପଣ କରି ଲେଖିଛନ୍ତି, "ମନରେ ପଡ଼ିଯାଏ ୧୯୫୬ ମସିହାର କଥା । ଭଞ୍ଜ-ଜୟନ୍ତୀ ସପ୍ତାହର ଶେଷ ଦିବସରେ ଗୁରୁତର ଅସୁସ୍ଥ ହୋଇ ଗୁରୁଦେବ ଡାକ୍ତରଖାନାରେ ଭର୍ତ୍ତି ହେଲେ । ବହୁମୂତ୍ର ରୋଗ ଭଲ ହେବାକୁ ବହୁ ସମୟ ଲାଗିବାରୁ ସେ ଡାକ୍ତରଖାନାରେ ପଡ଼ି ରହିଲେ । ସେହି ସମୟରୁ ବଚ୍ଛନ୍ଦଚରଣଙ୍କ ଜୀବନ-ଧାରା ଭିନ୍ନଧାରା ହେଲା । ଶୃଙ୍ଗାର ରସର ପ୍ରାଦୁର୍ଭାବ ହ୍ରାସ ପାଇ ତାହାର ସ୍ଥାନ ଗ୍ରହଣ କଲା ଭକ୍ତିରସ ।" ନୀଳମଣି ବାବୁ ମଧ୍ୟ ଲକ୍ଷ୍ୟ କରି ଅଛନ୍ତି; "ତାଙ୍କ ହୃଦୟ ଭିତରେ ଆସିଥିଲା ପ୍ରେମଭକ୍ତିର ଅପୂର୍ବ ପ୍ଲାବନ……ଏକ ଭକ୍ତିସ୍ନିଗ୍ଧ ଅଶ୍ରୁଳ ଶରଣାପତ୍ତିର ଭାବ ।" ଏହି ସାର୍ବଭୌମିକ ପ୍ରେମ ବା ଭଗବତ୍ ପ୍ରେମ ତାଙ୍କ ବ୍ୟକ୍ତିତ୍ୱରେ ଆଜନ୍ମରୁ ନିହିତ ଥିଲା । କିନ୍ତୁ ୧୯୫୬ ମସିହାଠାରୁ ତାହା ଅଧିକରୁ

ଅଧିକ ପରିସ୍ଫୁଟ ହେବାକୁ ଲାଗିଲା । ଭକ୍ତିମାର୍ଗୀୟ କବିତା ରଚନା କରିବାକୁ ସେ ଅଧିକତର ମନ ବଳାଇଥିଲେ । ଶ୍ରୀ ରଜତ କୁମାର କର ଠିକ୍ ଲକ୍ଷ୍ୟ କରିଛନ୍ତି, "ବିଦେହ ଅସ୍ତିତ୍ୱ" ରେ ଅର୍ଥାତ୍ "ଦୈହିକ ଅସ୍ତିତ୍ୱର ଊର୍ଦ୍ଧ୍ୱରେ ଏକ ଚେତନାତ୍ମକ ଅନୁଭୂତି ସମ୍ବଳିତ ପରିବ୍ୟାପ୍ତ ସ୍ଥିତିରେ ନିମଜ୍ଜିତ ହୋଇଥିଲେ ଶଚ୍ଛିଦାନନ୍ଦ ।" ତାଙ୍କୁ କାୟକ୍ଲେଶ ବାଧୁ ନଥିଲା, ଅଭାବ ଅନାଟନରେ ସେ ବିଚଳିତ ବୋଧ କରୁ ନଥିଲେ, ରୋଗ ଯନ୍ତ୍ରଣା ସହ୍ୟ କରିବା ଲାଗି ତାଙ୍କର ଅସୀମ ଧୈର୍ଯ୍ୟ ଥିଲା, ସାଂସାରିକ ସୁଖ ସମୃଦ୍ଧି ପ୍ରତି ସେ ଏକାନ୍ତ ଉଦାସୀନ ଥିଲେ, କାହାରିଠାରୁ କିଛି ପ୍ରାପ୍ତି ଅପ୍ରାପ୍ତି କଥା ସେ ବିଚାରକୁ ଆଣୁ ନଥିଲେ । ଏ ସବୁ ଥିଲା ତାଙ୍କ "ବିଦେହ ଅସ୍ତିତ୍ୱ" ବୋଧର ଫଳ । କବିଜନ ବାଂଛିତ କଳ୍ପଲୋକର ସ୍ୱାଦ ସେ ଚାଖିଥିବାରୁ ନିଜକୁ ମେହି "ବିଦେହ" ଲୋକ ପ୍ରତି ଉନ୍ମୁଖ କରି ରଖିଥିଲେ । ଭଗବାନଙ୍କ ଶଳାକା ଯେଉଁ ଅବସ୍ଥାରେ ଥିଲେ ହେଁ ଯେପରି ମେରୁ ଅଭିମୁଖୀ ହୋଇ ରହିଥାଏ, ଶଚ୍ଛିଦାନନ୍ଦଙ୍କ ଜୀବନଚର୍ଯ୍ୟା ସବୁ ସମୟରେ ସେହିପରି "ବିଦେହ ସ୍ଥିତି" ପ୍ରତି ଉନ୍ମୁଖ ହୋଇ ରହିଥିଲା । ତାହାର ପ୍ରତିଫଳନ ତାଙ୍କ କବିତା ରାଜ୍ୟରେ ଘଟିବା ସ୍ୱାଭାବିକ ।

ଶଚ୍ଛିଦାନନ୍ଦଙ୍କ ପ୍ରମୁଖ ସାରସ୍ୱତ ସୃଷ୍ଟି ହେଉଛି "କବିତା କୁମୁଦ" । ଅଧ୍ୟାପକ ଶ୍ରୀ ସୁଧୀର ନନ୍ଦ ସହାନ୍ତି ଯଥାର୍ଥରେ କହିଛନ୍ତି, "କବିଙ୍କ ପରିଚୟର ସମ୍ପୂର୍ଣ୍ଣ ସ୍ୱାକ୍ଷର ବହନ କରିଛି ତାଙ୍କ 'କବିତା କୁମୁଦ' ପଦାବଳୀ ସଂକଳନ ।" ଏଥିରେ ସନ୍ନିବେଶିତ ୧୦୧ ଗୋଟି କବିତା ମଧ୍ୟରୁ ଅଧ୍ୟାପକ ମହାଶୟଙ୍କ ଶ୍ରେଣୀ ଭାଗ ଓ ଗଣନା ଅନୁସାରେ "ଶ୍ରୀରାମ ବନ୍ଦନା" ଆଦି ଆବାହନୀ ଗୀତ ନଅଟି, 'ଆଦ୍ୟ ଭେଟ' 'ଲୋଚନାଭିଷେକ' ଆଦି ପ୍ରେମମୂଳକ ଗୀତିକା ଏକତିରିଶ ଗୋଟି, "ମୋ ଦେଶ" ଆଦି ଦେଶାତ୍ମବୋଧ ଗୀତିକା ତେର ଗୋଟି, "ପଲ୍ଲୀବଧୂ" ଆଦି ବର୍ଣ୍ଣନାମୂଳକ ଗୀତ ସାତ ଗୋଟି, "ମୋ ସୁନାପୁଅ" ଏବଂ "ଲକ୍ଷ୍ମୀକାନ୍ତ ଚୌଧୁରୀ" ଆଦି ଶୋକ ଗୀତିକା ଓ ସ୍ମରଣିକା ଅଠେଇଶି ଗୋଟି, "ଜହ୍ନ" ଆଦି ଶିଶୁଗୀତ ତିନିଗୋଟି ବ୍ୟତୀତ "ଅଳସର ଦୁର୍ଦ୍ଦଶା" ଭଳି ଉପଦେଶାତ୍ମକ ଗୀତ ସହିତ ବିବିଧ ଶ୍ରେଣୀୟ ଗୀତ ମିଶି ଦଶଟି । ଶଚ୍ଛିଦାନନ୍ଦଙ୍କ ରଚିତ ବାଣୀ-ଆବାହନୀ ଗୀତିକାଗୁଡ଼ିକ ଆଉ ଏକ ପ୍ରକାର ଦେଶାତ୍ମବୋଧ ଗୀତିକା ବୋଲି କହିଲେ ଚଳିବ । ଏଥିରେ ଜାତୀୟ ଜାଗରଣ ପାଇଁ ବାଣୀଙ୍କୁ ଉଦ୍‌ବୋଧନ କରାଯାଇଅଛି । ଜାତୀୟ ଜୀବନର ଆଶା ଓ ବିଫଳତା ଗୌରବ ଓ ଦୈନ୍ୟର ଚିତ୍ର ଏ କବିତାମାନଙ୍କରେ ଦେଖିବାକୁ ମିଳୁଥିବାରୁ ଏଗୁଡ଼ିକୁ ଦେଶାତ୍ମବୋଧ କବିତା ଶ୍ରେଣୀୟ ବୋଲି ବିଚାରକୁ ନିଆଯାଇ-ପାରେ । ଏହି ଦୃଷ୍ଟିରୁ ଦେଖିଲେ, ଶଚ୍ଛିଦାନନ୍ଦଙ୍କ ରଚିତ ଦେଶାତ୍ମବୋଧ

କବିତା ସଂଖ୍ୟା ବେଶ ବଢ଼ିଗଲାଣି । ସେମାନଙ୍କର ତାଙ୍କ କବିତା ଦେଖିଲେ ଏକ ଉନ୍ନତି । ଏହି ବହୁ ସଂଖ୍ୟକ କବିତାରୁ ବଚ୍ଛନ୍ଦଚରଣଙ୍କ ହୃଦସ୍ପନ୍ଦନର ଉତ୍କର୍ଷର ରୂପର ପରିଚୟ ମିଳେ । ତାଙ୍କ ରଚିତ ସ୍ତବଗୀତ କବିତାମାନଙ୍କରେ ମଧ୍ୟ ଦେଶପ୍ରୀତିମୂଳକ ଅନେକ ଭାବ ସମର୍ଥିତ ହୋଇ ରହିଛି । ତେଣୁ ବଚ୍ଛନ୍ଦ-ଚରଣଙ୍କ କବିତା-ସ୍ରୋତରେ ଦୁଇ ପ୍ରମୁଖ ଧାରା ହେଲା "ପ୍ରେମ" ଓ ଦେଶପ୍ରେମ ; ଅର୍ଥାତ୍ ବୈୟକ୍ତିକ ପ୍ରୀତି ଓ ସାର୍ବିକ ପ୍ରୀତି । 'କବିତା କୁସୁମ' ୧୯୪୭ ମସିହା ଜୁଲାଇ ମାସରେ ପ୍ରକାଶିତ ହେଲା । ତେଣୁ ସାର୍ବଭୌମିକ ପ୍ରେମ ବା ଭଗବତ୍ ପ୍ରୀତିର ସ୍ପଷ୍ଟ ପ୍ରମାଣ ଏଥିରେ ମିଳିନାହିଁ । କିନ୍ତୁ ଜୀବନ ପ୍ରୀତିର ସହଜ ପ୍ରବାହ ଓ ମାନବିକତାର ପ୍ରକାଶ କବିତା କୁସୁମର କେତେକାଂଶରେ ଅସ୍ପଷ୍ଟ ନୁହେଁ । ୧୯୫୦ ମସିହା ପରଠାରୁ ତାଙ୍କ ରଚିତ କବିତାମାନଙ୍କରେ ନିର୍ମଳ ଭଗବତ୍ ପ୍ରୀତି ରସ ଲାଭ କଲା । ସେଥିରୁ କେତେକ କବିଶିଷ୍ଟ ଗୀତିକା "ଜଗନ୍ନାଥ କରୁଣା ଭଜନ" ସଂକଳନରେ ସ୍ଥାନ ପାଇଛି । ବଚ୍ଛନ୍ଦଚରଣଙ୍କ ମାନସିକ ସମାଜର ଏକ ସନ୍ତୁଳିତ ସଂସ୍ଥାପନ ପାଇଁ ଦିବ୍ୟ ପ୍ରେମର ସାମଗ୍ରିକ ଅବବୋଧର ଶକ୍ତିକୁ ଆବିର୍ଭାବ ହେବ । ଏହି ଦିବ୍ୟ ପ୍ରେମରେ ବଚ୍ଛନ୍ଦଚରଣ "ସ୍ୱଦେହ ଅସ୍ତିତ୍ୱ"ର ଅନୁଭବ ଲାଭ କରିଥାନ୍ତି ଓ "ବିଦେହ ସ୍ଥିତି"ର ପରମ ମର୍ଯ୍ୟାଦା ଅର୍ପଣ କରିଥାନ୍ତି । ବାହାଣ୍ଟିରେ ସେତେବେ କବିପ୍ରିୟାଙ୍କ ତନୁ ଭସ୍ମୀଭୂତ ହୋଇ ପରିଣତ ହୋଇଗଲା, କବି କବିପ୍ରିୟାଙ୍କ ସମ୍ବୋଧନ କରି କହିଥିଲେ, ସେହି "ଜୀବନ ଅମିୟ"କୁ ଶ୍ମଶାନ ନେଇଗଲେ ବି ପାରିବ ନାହିଁ, ତାହା ଉକ୍ତ "ଶ୍ରୀଅଙ୍ଗ-ବନ୍ଧନ"ରେ ଥିଲା । ଏବେ ତାହା ଜଗନ୍ନାଥଙ୍କ ଶକ୍ତିକୁ ସ୍ଥାନରେ ସ୍ପନ୍ଦ-ସ୍ୱରଭିତ ମୋ ଜୀବନ-ଶକ୍ତିକୁ ଆଶ୍ରୟ କରି ରହିବ । ଏହି "ଜୀବନ ଅମିୟ" ମର-ତନୁକୁ ଆଲମ୍ବନ କରି ଥାଏ ସତ, କିନ୍ତୁ ତାହାର ନିଜସ୍ୱ ସ୍ଥିତିରେ ତାହା ସରଳତା ଅନପେକ୍ଷ ସତ୍ତ୍ୱ । ବୈୟକ୍ତିକ ପ୍ରୀତିରେ ସୁଦ୍ଧା ବଚ୍ଛନ୍ଦଚରଣ ଏହି "ଜୀବନ ଅମିୟ"ର ସନ୍ଧାନ ପାଇଥିଲେ ।

ବଚ୍ଛନ୍ଦଚରଣ ନିଜ ସାହିତ୍ୟାଦର୍ଶର ନମୁନା ସ୍ୱରୂପ କବିତା କୁସୁମର କବିତା ଛନ୍ଦକୁ ଉପସ୍ଥାପନ କରିଛନ୍ତି । ଓଡ଼ିଶାର କଳା-ସଙ୍ଗୀତପସ୍ଥ ପରମ୍ପରା ଅନୁମୋଦିତ ଶୁଦ୍ଧ ରାଗରାଗିଣୀମାନଙ୍କୁ ରକ୍ଷା କରି ସେହି କମନୀୟ ବାହନ ଦ୍ୱାରା ନବୀନତମ ଭାବକୁ ପ୍ରକାଶ କରିବା ତାଙ୍କ ସାହିତ୍ୟାଦର୍ଶ ଥିଲା । କବିତା କୁସୁମର ମୁଖବନ୍ଧରେ ସେ ଲେଖିଛନ୍ତି, "ଉତ୍କଳୀୟମାନଙ୍କ ପରି ସଙ୍ଗୀତ ପ୍ରାଣ, କବିତା ପ୍ରାଣ ଓ କଳାପ୍ରାଣ ଜାତି ଏକା ଭାରତରେ କାହିଁକି, ସାରା ପୃଥିବୀରେ ଆଉ ନାହିଁ ।" ବଚ୍ଛନ୍ଦଚରଣଙ୍କର ଏହା ଦମ୍ଭୋକ୍ତି ବା ଆସ୍ଫାଳନ ନୁହେଁ । ଓଡ଼ିଆମାନେ ଆତ୍ମ-ସଚେତନ ହେବେ, ଆତ୍ମ-ନିରୀକ୍ଷଣ କରିବେ ଓ ନିଜର ସଂସ୍କୃତିର ପରମ୍ପରା ଶୁଖି ଯାଉଥିବା ଅନ୍ତଃସ୍ରୋତର

ଗମ୍ଭୀରତାରେ ଅବଗାହନ କରିବେ, ସେମାନେ ସେହି ପରିମାଣରେ ସ୍ୱଚ୍ଛନ୍ଦଚରଣଙ୍କର ଉକ୍ତିର ସାର୍ଥକତା ଉପଲବ୍ଧି କରିବେ । ସ୍ୱଚ୍ଛନ୍ଦଚରଣ ତାଙ୍କ ପୂର୍ବ ଉକ୍ତ ସନ୍ଦର୍ଭ ସଂଯୋଜିତ କରି କହିଛନ୍ତି, 'ଛନ୍ଦୋମୟ ଗୀତ ଉତ୍କଳୀୟ ଜୀବନର ପ୍ରିୟତମ ସାମଗ୍ରୀ । ଏଥିପାଇଁ ଉତ୍କଳୀୟ ମନୀଷା ବହୁ ଶତାବ୍ଦୀ ବ୍ୟାପୀ ଶ୍ରମ ଓ ଗବେଷଣା ଦ୍ୱାରା ସୃଷ୍ଟି କରିଛି ଅଗଣିତ ଗ୍ରନ୍ଥ ଓ ସଂଖ୍ୟାତୀତ ରାଗରାଗିଣୀ ।'' ଏସବୁ ଆମର ସାରସ୍ୱତ ସଂପଦ, ଆମ ଉଚ୍ଚ ପରମ୍ପରାର ପ୍ରାଣକୋଷ । ବିଭିନ୍ନ ରସ, ଭାବ ବିଭାବକୁ ସାଙ୍ଗୀତିକ ମୋହରେ ବାନ୍ଧି ଆଣିବା ପାଇଁ ଏମାନଙ୍କର ଅପରିସୀମ ସାମର୍ଥ୍ୟ ଅଛି । ଓଡ଼ିଆ ଜନସମାଜ ହୃଦୟକୁ ସ୍ପର୍ଶ କରିବାର ଯାଦୁକରୀ ଶକ୍ତି ଏ ରାଗରାଗିଣୀ-ମାନଙ୍କର ଅଛି । ଏ ସବୁ ଗୋଟିଏ ଗୋଟିଏ ଅଭିନବ ସ୍ପନ୍ଦନ, ଓଡ଼ିଆଙ୍କ ହୃତ୍ସ୍ପନ୍ଦନ ସହିତ ସମ୍ମୋହନ ମନ୍ତ୍ରରେ ସନ୍ଧିତ । ଓଡ଼ିଶାର ପ୍ରତିପଲ୍ଲୀର କଷତ ଗାୟକମାନଙ୍କ କଣ୍ଠରେ ଏମାନେ ଏବେବି ବଞ୍ଚି ରହିଛନ୍ତି । ଏମାନଙ୍କ ଗାନଶୈଳୀ ସ୍ୱତନ୍ତ୍ର ରୂପ ଓଡ଼ିଶୀ । ଅବଶ୍ୟ ଏ ଗାନଶୈଳୀରେ ଏବେ ଗୁରୁତର ଅପମିଶ୍ରଣ ଘଟି ଚାଲିଛି । ସ୍ୱଚ୍ଛନ୍ଦଚରଣ ଏହି ଅପମିଶ୍ରଣ ବିରୁଦ୍ଧରେ ଭାରତୀୟ ପିଙ୍ଗଳ କୋର୍ଟର ଶହେ ଚୁଆଳିଶ ଧାରା ଜାରି କରିଥିଲେ । ସ୍ୱଚ୍ଛନ୍ଦଚରଣ ଜନ୍ମ ହୋଇନଥିଲେ ବିଜାତୀୟ ପ୍ରଭାବ ନିରଙ୍କୁଶ ଭାବରେ ମାତି ଯାଇଥାନ୍ତା, କିନ୍ତୁ ନିରଙ୍କୁଶ ମନୋବୃତ୍ତି ତ୍ୟାଗ କରି ସତର୍କ ପାଦ ପକାଇ ଏବେ ବିଜାତୀୟ ପ୍ରଭାବ ଅବଶ୍ୟ ଆଗେଇ ଚାଲିଛି । ଏହା ସ୍ୱୀକାର କରିବାକୁ ହେବ ଯେ ସ୍ୱଚ୍ଛନ୍ଦଚରଣଙ୍କ ଜନ୍ମ ଫଳରେ ବିଜାତୀୟତା—ପ୍ରତିରୋଧକ ଶକ୍ତି ସଞ୍ଚାରିତ ହୋଇଅଛି । ଫଳାଫଳ ଓଡ଼ିଶାର ସାଂସ୍କୃତିକ ଭାଗ୍ୟ ଉପରେ ନିର୍ଭର କରେ ।

ସ୍ୱଚ୍ଛନ୍ଦଚରଣ ଲେଖିଛନ୍ତି, "ସହରମାନ ଆମମାନଙ୍କ ଜାତୀୟ ଜୀବନର ଶ୍ମଶାନ ଓ ବିଜାତୀୟ ପ୍ରଭାବର ଦୁର୍ଗ ।" ମୁଷ୍ଟିମେୟ ଶିକ୍ଷିତ ସଂପ୍ରଦାୟ ଏହି ସହରମାନଙ୍କରେ ବାସ କରନ୍ତି, ସକଳ ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରନ୍ତି, ଏବଂ ପଲ୍ଲୀ ପ୍ରତି, ପଲ୍ଲୀବାସୀଙ୍କ ପ୍ରତି, ତଥା ପଲ୍ଲୀ-ସଂସ୍କୃତି ପ୍ରତି ଅନାଦର ଭାବ ପୋଷଣ କରନ୍ତି । ଏହି ସହରମାନଙ୍କରେ ସାଂସ୍କୃତିକ ଅପମିଶ୍ରଣ ବ୍ୟାପକ ଭାବରେ ଘଟେ । କିନ୍ତୁ ନିଭୃତ ପଲ୍ଲୀମାନଙ୍କରେ ଯୁଗଯୁଗ ସଞ୍ଚିତ ତପସ୍ୟାର ଫଳ ଜାତୀୟ ସଂସ୍କୃତି ଉଜ୍ଜୀବିତ ହୋଇ ରହିଛି । ଭାରତ ହେଉ, ଅଥବା ଓଡ଼ିଶା ହେଉ, ଯଦି ତାହା ନିଜ ପରମ୍ପରା ଯେବେ ବଞ୍ଚିଛି, ତେବେ ବଞ୍ଚିଛି ପଲ୍ଲୀରେ । ସ୍ୱଚ୍ଛନ୍ଦଚରଣ କହନ୍ତି—ରାଧାନାଥଙ୍କ ଠାରୁ ଆରମ୍ଭ କରି ଏ ପର୍ଯ୍ୟନ୍ତ ଓଡ଼ିଶାର ପ୍ରତିଭାଶାଳୀ ଉଚ୍ଚ ଶିକ୍ଷିତ କବିମାନେ ମୁଷ୍ଟିମେୟ ସହରବାସୀ ଶିକ୍ଷିତଙ୍କ ପାଇଁ କବିତା ଲେଖୁଛନ୍ତି ।" ବୈଦେଶିକ ଛାଞ୍ଚରେ ଢଳା ହୋଇ ଥିବାରୁ ତାହା ଏକ ପ୍ରକାର ଦାଏଁ ବାଏଁ ଉଡ଼ି

ଯାଉଛି, ଉତ୍କଳର ଶତକଡ଼ା ୯୬ ଜଣ ଲୋକ ତନ୍ଦ୍ରିର ଆସ୍ୱାଦନରୁ ବଞ୍ଚିତ ହେଉ ଅଛନ୍ତି ।" ସଂଖ୍ୟା ଗରିଷ୍ଠ ପଲ୍ଲୀବାସୀମାନେ ତାଙ୍କ ନିଜସ୍ୱ ମାର୍ଗରେ ଛାନ୍ଦ, ଚଉପଦୀ, ପାଲା, ଦାସକାଠିଆ, ଗୋଟିପୁଅ ଯାତ୍ରା ଦେଖି ସନ୍ତୁଷ୍ଟ ଅଛନ୍ତି । କିନ୍ତୁ ଦିନକୁ ଦିନ ସହରାଞ୍ଚଳୀୟ ସଂସ୍କୃତି (ବରଂ ଅପସଂସ୍କୃତି) ପଲ୍ଲୀ ଜୀବନକୁ ବ୍ୟାପି ଚାଲିଛି । ସହରାଞ୍ଚଳୀୟ ଅର୍ଥନୀତି ପଲ୍ଲୀ ଅର୍ଥନୀତିକୁ ଭ୍ରଷ୍ଟ, ବିବଶ କରୁଥିଲା ବେଳେ ପଲ୍ଲୀ ଆଉ କେତେ ବା ନିଜର ସାଂସ୍କୃତିକ ବିଶୃଙ୍ଖଳତା ରକ୍ଷାକରି ପାରନ୍ତା । ସ୍ୱଚ୍ଛନ୍ଦଚରଣ ଓଡ଼ିଶାର ଜାତୀୟ ଜୀବନରେ ନବଜାଗରଣ ଓ ଆତ୍ମସଚେତନତାର ଆନୟନ ପାଇଁ ଭଞ୍ଜ-ଜୟନ୍ତୀ ଆନ୍ଦୋଳନର ସୂତ୍ରପାତ କରିଥିଲେ । ଭଞ୍ଜ-ଜୟନ୍ତୀ ଆନ୍ଦୋଳନରେ ଓଡ଼ିଶା ହୁଲସ୍ଥୁଲ୍ ହୋଇଗଲା । ଅଧ୍ୟାପକ ପଠାଣୀ ପଟ୍ଟନାୟକ ଥରେ ମନ୍ତବ୍ୟ ପ୍ରକାଶ କରି କହୁଥିଲେ, ଓଡ଼ିଶାର ସାଂସ୍କୃତିକ ଇତିହାସରେ ଭଞ୍ଜ-ଜୟନ୍ତୀ ଆଟମ୍ ବମ୍ ପରି ଫୁଟିଲା, ଯାହା ଘଟିବାର ତ ଚମକପ୍ରଦ ଭାବରେ ଘଟିଲା, କିନ୍ତୁ 'ତାହାର ତେଜଷ୍କ୍ରିୟ ବାଷ୍ପୀୟ ପରିବେଶ ଓଡ଼ିଶାର ବାତାବରଣକୁ ବ୍ୟାପକ ଭାବରେ ଆଛନ୍ନ କରି ରଖିଛି । କିନ୍ତୁ ସ୍ୱଚ୍ଛନ୍ଦଚରଣ 'କବିତା କୁମୁଦ' ଏକ ଆଟମ୍ ବମ୍ ବୋଲି କହୁଥିଲେ । ବିଜାତୀୟତାର ଦୁର୍ଗ ଉପରେ କବିତା କୁମୁଦ ଏକ ଆଣବିକ ବୋମା ବିସ୍ଫୋରଣ ଘଟାଇଲା ବୋଲି ତାଙ୍କର ବିଶ୍ୱାସ । ଯେଉଁମାନେ ମତାନ୍ଧତା ପୋଷଣ କରି କହୁଥିଲେ ଯେ ଛାନ୍ଦ, ରାଗ ରାଗିଣୀରେ ଆଧୁନିକ ଭାବଧାରା ପ୍ରକାଶ କରିହେବ ନାହିଁ, ତେଣୁ ସେଗୁଡ଼ିକ ଅନୁପଯୋଗୀ ଜୀର୍ଣ୍ଣ ପୋଷାକ ତୁଲ୍ୟ ତ୍ୟାଜ୍ୟ, ସେମାନଙ୍କୁ ସ୍ୱଚ୍ଛନ୍ଦଚରଣଙ୍କ ଜବାବ ହେଉଛି 'କବିତା କୁମୁଦ' । କବି ସ୍ୱଚ୍ଛନ୍ଦଚରଣ କଲମ ଧାରଣ କରି ଦେଖାଇ ଦେବାକୁ ଚାହୁଁଥିଲେ ଯେ ଅତ୍ୟାଧୁନିକ ଭାବଧାରାର ବାହକ ହେବାପାଇଁ ଛାନ୍ଦ ଓ ରାଗରାଗିଣୀ ସର୍ବତୋଭାବରେ ସମର୍ଥ । କବିର ପ୍ରତିଭା ଓ ତପସ୍ୟା (ସାଧନା) ଉପରେ ନିର୍ଭର କରି ଏହି ସାମର୍ଥ୍ୟ ଊଣା ଅଧିକ ବୋଧ ହୋଇ ପାରେ । ପ୍ରତିଭା ଥାଇ ଯଦି ସାଧନା ନ ରହିଲା, ତେବେ ମଧ୍ୟ ଅବସ୍ଥା ସୁଧୁରିବ ନାହିଁ । ତେଣୁ ଓଡ଼ିଆ ପରମ୍ପରା-ସମ୍ମତ କାବ୍ୟକଳା-ସରଣୀରେ ପର୍ଯ୍ୟାପ୍ତ ସାଧନା କରିବା ପାଇଁ ସେ ପ୍ରତିଭାଧର ତରୁଣମାନଙ୍କୁ ଆହ୍ୱାନ ଦେଇଥିଲେ ।

ସେ କହନ୍ତି, "ସାହିତ୍ୟ ହିଁ ଜାତୀୟ ଜୀବନର ମୁକୁର" ।

'ମୁକୁରୋଦରେ ବିମ୍ବ ପଡ଼ଇ ଯଥା
ଜାତି ଜୀବନ ବିମ୍ବ ସାହିତ୍ୟେ ତଥା ।"

"ଏ ମୁକୁରରେ ବିଜାତୀୟ ପ୍ରଭାବର ବିମ୍ବ ଯେପରି ନ ପଡେ ସେଥିପ୍ରତି ପ୍ରତ୍ୟେକ ଜାତୀୟତାବାଦୀ କବି ଅବହିତ ହେବା ଉଚିତ ।" କେତେ ଆଶା ପୋଷଣ

କରି ବିଚ୍ଛନ୍ଦଚରଣ ଲେଖିଥିଲେ, "ମୋ ସମସାମୟିକ କବିମାନଙ୍କ ମଧ୍ୟରେ ଓ ମୋ ଉତ୍ତର ପୁରୁଷମାନଙ୍କ ମଧ୍ୟରେ ମୋଠାରୁ ନିଶ୍ଚୟ ଅଧିକ ଶକ୍ତିଶାଳୀ କବି ଅଛନ୍ତି । ସେମାନେ ଯଦି ଠିକ୍‌ଏ ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୁଅନ୍ତେ ତାହାହେଲେ ବୀଣାଙ୍ଗ ଭାରତୀଙ୍କ ବିଶ୍ୱ ବିମୋହିନୀ ବିପଞ୍ଚୀରେ ଅବଶ୍ୟ ତା ଛନ୍ନ ତାର ସଂଯୋଜିତ ହୁଅନ୍ତା ।" ଏହି ଆଶାରେ, ଏହି ଭରସାରେ ସେ ଲେଖନୀ ଚଳାଉଥିଲେ । ସେ ଯେଉଁ କାର୍ଯ୍ୟରେ ହାତ ଦେଇଛନ୍ତି ତାହା ଯେ ସମ୍ଭବ ସେ ତାହା ପ୍ରମାଣିତ କରି ଦେଇ ଯାଇଛନ୍ତି । ଅଧିକ ପ୍ରତିଭାଧର ସାଧକମାନଙ୍କ ହାତରେ ତାହା ଯେ ଦିବ୍ୟଶ୍ରୀରେ ମଣ୍ଡିତ ହୋଇ ପାରିବ, ଏ ଦୃଢ଼ ଆଶା ଓ ବିଶ୍ୱାସ ସେ ପୋଷଣ କରିଛନ୍ତି । ଓଡ଼ିଶାରୁ ଓଡ଼ିଆଜାତିର ବିଲୟ ନ ଘଟିବା ପର୍ଯ୍ୟନ୍ତ ବିଚ୍ଛନ୍ଦଚରଣଙ୍କ ଏ ଆଶା ଓ ବିଶ୍ୱାସ କଦାଚ ବ୍ୟର୍ଥ ହେବ ନାହିଁ । ହେଲେ ନା ହେଲେ ଅପୂର୍ବ ଅପ୍ରତ୍ୟାଶିତ ସମ୍ଭାବନାରେ ଓଡ଼ିଶାର ସାଂସ୍କୃତିକ ତରୁ ନବପଲ୍ଲବିତ ହୋଇ ଉଠିବ । କବିତା କୁମୁଦର ମାର୍ମିକ ମୁଖବନ୍ଧର ଶେଷ ପର୍ଯ୍ୟାୟରେ ବିଚ୍ଛନ୍ଦଚରଣ ନିଜ ଦୃଷ୍ଟିକୋଣର ସ୍ପଷ୍ଟୀକରଣ ଦେଇ କହିଛନ୍ତି, 'ନୂତନ ସୌନ୍ଦର୍ଯ୍ୟ ଗ୍ରହଣରେ ମୁଁ ଅପକ୍ଷପାତୀ ନୁହେଁ; କିନ୍ତୁ ସେଥି ନିମନ୍ତେ ମୋ ଜାତିର କମନୀୟ ପରମ୍ପରା ତ୍ୟାଗ କରିବାକୁ ମୁଁ ଅକ୍ଷମ । ତେଣୁ ଏହା ବୁଝିବାକୁ ହେବ ଯେ 'କବିତା କୁମୁଦ' ତଥା ବିଚ୍ଛନ୍ଦ-ଚରଣଙ୍କର ଅନ୍ୟାନ୍ୟ ସାରସ୍ୱତ-କୃତି କେବଳ ଅତୀତର ନିଷ୍ପ୍ରାଣ ପୁନରାବୃତ୍ତି ନୁହେଁ କିମ୍ବା ଭବିଷ୍ୟତର ଉଦ୍‌ଭଟ ଅସାମଞ୍ଜସ୍ୟର ବିସ୍ଫୋରଣ ନୁହେଁ । ବିଚ୍ଛନ୍ଦଚରଣଙ୍କ କବିତା ସାଧନାରେ ଅତୀତ ଓ ଭବିଷ୍ୟତର ସୁସମଞ୍ଜସ, ସନ୍ତୁଳିତ, ସମନ୍ୱୟ ଚେଷ୍ଟା କରିବା ଲାଗି ପ୍ରୟାସ କରାଯାଇଅଛି ।

ଭାରତ ବ୍ରିଟିଶ ଶାସନାଧୀନ ହେବା ପରେ ପାଶ୍ଚାତ୍ୟ ଦେଶମାନଙ୍କ ସାହିତ୍ୟ ଓ ସଂସ୍କୃତିର ପ୍ରଭାବ ଭାରତରେ ପ୍ରବେଶ କରିବା ଲାଗି ଦ୍ୱାର ଉନ୍ମୁକ୍ତ ହୋଇଗଲା । ପାଶ୍ଚାତ୍ୟ ଚାଲିଚଳନ, ହାବଭାବକୁ ଗ୍ରହଣ କରି କେତେକ ମହଲରେ ଭାରତୀୟମାନେ ଅଭାରତୀୟ ଆଚରଣକୁ ମର୍ଯ୍ୟାଦା ଦେବାକୁ ଲାଗିଲେ । ପରାଧୀନ ଭାରତବାସୀ ଇଂରାଜୀ ଶିକ୍ଷା ମୋହରେ ପଡ଼ି ନିଜ ଦେଶରେ ସ୍ୱଦେଶୀ ଭାବନା ଭୁଲିଗଲେ ଓ ବିଦେଶାଗତ ବ୍ୟକ୍ତି ପରି ଆଗ୍ରହ ବ୍ୟବହାର ପ୍ରଦର୍ଶନ କଲେ । ଏହି ମନୋବୃତ୍ତି ବିରୁଦ୍ଧରେ ମହାଭାରତୀୟ ପ୍ରତିକ୍ରିୟା ପ୍ରକାଶ ପାଇଲା ଓ ସ୍ୱଦେଶୀ ଚିନ୍ତା, ସ୍ୱଦେଶୀ ଆଚରଣ ପୁନଃ ପ୍ରତିଷ୍ଠିତ ହେବା ପାଇଁ ଅଧିକାର ଜାହିର କଲା । ଏହି ସ୍ୱଦେଶୀ ଆନ୍ଦୋଳନର ଗୋଟିଏ ଦିଗ ହେଲା, ମହାଭାରତୀୟ ସଂସ୍କୃତି ଓ ସାହିତ୍ୟର ପୁନରୁତ୍ଥାନ । ଆଉ ଗୋଟିଏ ଦିଗ ହେଲା ଆଞ୍ଚଳିକ ପ୍ରାଦେଶିକ ସାହିତ୍ୟ ଓ ସଂସ୍କୃତିର ପରମ୍ପରାର ପୁନର୍ଜାଗରଣ । ଏହି ଦ୍ୱିବିଧ ଧାରାର କ୍ରିୟା ପ୍ରତିକ୍ରିୟାରେ ଯେଉଁ

ଆବର୍ତ୍ତ ସୃଷ୍ଟି ହେଲା, ତାହା କେତେକ ଗମ୍ଭୀର ସମସ୍ୟା ଜାତ କଲା ଓ କେତେକ ଗୁରୁତର ପରିବର୍ତ୍ତନର ସଙ୍କେତ ଦେଲା । ବିଦେଶାଗତ ଅଧୁନାତନ ପାଶ୍ଚାତ୍ୟ ଭାବଧାରା, ସର୍ବଭାରତୀୟ ସଂସ୍କୃତିଗତ ସୁପ୍ରାଚୀନ ଚିନ୍ତାଧାରା, ପ୍ରାଦେଶିକ ସାହିତ୍ୟରେ ସୁପ୍ରତିଷ୍ଠିତ ପରମ୍ପରାର ସମୀକରଣ କରି ବିଚ୍ଛନ୍ଦଚରଣ ଏକ ଜାତୀୟତାବାଦୀ ସମାଧାନ ଉପସ୍ଥାପନ କଲେ । ଏହି ଜାତୀୟତାବାଦୀ ସମାଧାନର ସୂତ୍ର ହେଲା ଯେ ଓଡ଼ିଆ ସାହିତ୍ୟର ଅଗ୍ରଗତି ଲାଗି ଓଡ଼ିଶାର ପରମ୍ପରାକୁ ସୁରକ୍ଷିତ କରି ତାହାର ବିଶିଷ୍ଟ ଅଙ୍ଗରୂପେ ଭାରତୀୟ ସଂସ୍କୃତିକୁ ଉଜ୍ଜୀବିତ କରି ରଖିବାକୁ ହେବ ଓ ଅଧୁନାତନ ପାଶ୍ଚାତ୍ୟ ଭାବଧାରାକୁ ଗ୍ରହଣ କରି ତାହାକୁ ପରମ୍ପରା ସମ୍ମତ ସରଣୀରେ ଆତ୍ମସ୍ଥ କରିବାକୁ ହେବ । ଏଥିରେ ପ୍ରାଚୀନ ଓ ନବୀନର ସମନ୍ୱୟ ସାଧିତ ହେବ ଓ ବିଶ୍ୱ ସାରସ୍ୱତ ବିଭବ ଓଡ଼ିଶାର କଳା, ସଙ୍ଗୀତମୟ ପରମ୍ପରାକୁ ନବଜୀବନୀ ଶକ୍ତିରେ ପରିପୁଷ୍ଟ କରିବ । ଏହି ସମାଧାନର ସାର୍ଥକତା ହେଲା ଯେ ପରମ୍ପରା ଛେଦ ନ ଘଟାଇ ଆମେ ଯଥାର୍ଥ ପ୍ରଗତିଶୀଳ ସାହିତ୍ୟ ସୃଷ୍ଟି କରି ପାରିବା ।

ପରମ୍ପରା ସହିତ ପ୍ରଗତିକୁ ପ୍ରୀତି ବନ୍ଧନରେ ବାନ୍ଧି ବିଚ୍ଛନ୍ଦଚରଣ ବାଣୀ ସାଧନା କରି ଯାଇଛନ୍ତି । ଏକ ଦିଗରେ ସେକ୍ସପିୟର, ଶେଲି, କିଟ୍ସ, ବାଇରନ, ଅନ୍ୟ ଦିଗରେ କାଳିଦାସ, ଭବଭୂତି, ମାଘ, ଭାରବି ଏବଂ ଅନ୍ୟ ଏକ ଦିଗରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଆଦି କବିମାନଙ୍କ ଭାବସମ୍ପଦକୁ ଗ୍ରହଣ କରି ଓ ତାହାରୁ ଅନୁପ୍ରେରଣା ଲାଭ କରି ସେ ସ୍ୱକୀୟ ପ୍ରତିଭା ରସାଣରେ ଏକ ମାର୍ଜିତ ଅଭିରୁଚି-ସମ୍ପନ୍ନ ସାହିତ୍ୟ ସୃଷ୍ଟି କରିଛନ୍ତି ।

ବିଚ୍ଛନ୍ଦଚରଣ ଯେଉଁ ପୁରାଣିକା ଗୀତିକାମାନ ରଚନା କରିଛନ୍ତି ତାହା ପ୍ରତି ଦୃଷ୍ଟିପାତ କଲେ ତାଙ୍କ ଚରିତ୍ରର ଗୋଟିଏ ବିଶିଷ୍ଟ ଦିଗ ଉନ୍ମୋଚିତ ହୋଇଯାଏ । ବିଚ୍ଛନ୍ଦଚରଣ ମନେ କରୁଥିଲେ ଯେ ରବୀନ୍ଦ୍ରନାଥଙ୍କ କବିତା ଶୈଳୀର ଅବିରତ ଅନୁକରଣ ଫଳରେ ଓଡ଼ିଆ ସାହିତ୍ୟରେ ପରମ୍ପରାଭଙ୍ଗର ସୂତ୍ରପାତ ହୋଇଅଛି । ତାଙ୍କର ଧାରଣା ଥିଲା ଯେ ରାଧାନାଥ ରାୟଙ୍କ କାବ୍ୟ-କୃତିମାନଙ୍କରେ ଶୈଳୀ ଦୃଷ୍ଟିରୁ ତଥା ବିଷୟବସ୍ତୁ ନିର୍ବାଚନ ଦୃଷ୍ଟିରୁ ଓଡ଼ିଆ ସଂସ୍କୃତିର ଗ୍ଲାନିକାରକ ପ୍ରଭାବର ଅନୁପ୍ରବେଶ ଘଟିଛି । ସେ ଦୃଢ଼ ମନ୍ତବ୍ୟ ପ୍ରକାଶ କରି କହୁଥିଲେ ଯେ ବିଶ୍ୱନାଥ କରଙ୍କ ଅବାଞ୍ଛିତ ପ୍ରୋତ୍ସାହନ ଫଳରେ ଓଡ଼ିଆ ସାହିତ୍ୟରେ ଆଧୁନିକତା ନାମରେ ବିଜାତୀୟତା ପ୍ରସାର ଲାଭ କରିଛି । ତେଣୁ ତାଙ୍କ 'ସାହିତ୍ୟ ପାଇଁ ସଂଗ୍ରାମ' କାର୍ଯ୍ୟକ୍ରମରେ ସେ ଏହି ତିନି ପ୍ରଭାବ ପ୍ରତି ପ୍ରତିପକ୍ଷ ଭାବ ପୋଷଣ କରୁଥିଲେ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ ପ୍ରତି ଅନାଦର ଭାବ ଜାତ କରାଇବା ପାଇଁ

ସେଉଁ ଦୁଇଜଣଙ୍କୁ ସେ ବାଗ୍ମୀ ବୋଲି ମଣୁଥିଲେ, ସେ ହେଉଛନ୍ତି ବିଶ୍ୱନାଥ କର ଓ ବିଜୟ ଚନ୍ଦ୍ର ମଜୁମ୍‌ଦାର । ଏହି 'କର-ମଜୁମଦାରୀୟ' ସଗୋଷ୍ଠୀ ତାଙ୍କୁ ସମାଦୃତ କରିଥିଲା । ତେଣୁ ସେ ମୁକ୍ତ ସଭାମଞ୍ଚରେ ତାହାର ବିରୋଧ କରୁଥିଲେ ଓ ସେମାନଙ୍କ ମତବାଦକୁ ଖଣ୍ଡନ କରି ପ୍ରତିକୂଳ ମନ୍ତବ୍ୟ ଦେଉଥିଲେ । କିନ୍ତୁ ରାଧାନାଥଙ୍କ ମହନୀୟ କବି-ପ୍ରତିଭା ପ୍ରତି, ଗ୍ରଧାନାଥଙ୍କ ଅନ୍ତର୍ନିହିତ ସୁକୁମାର ସୌନ୍ଦର୍ଯ୍ୟବୋଧ ପ୍ରତି ଏବଂ ବିଶ୍ୱନାଥ କରଙ୍କ ସଂସ୍କୃତ ସଚେତନ ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରତି ତାଙ୍କର ଗଭୀର ସମ୍ମାନବୋଧ ଥିଲା । ମୁକ୍ତ ସଭାମଞ୍ଚରେ ଗାନ ପାଇଁ ଉଦ୍ଦିଷ୍ଟ ଓ ନିଜ ଉପସ୍ଥିତିରେ ସାଧାରଣ ସଭାମାନଙ୍କରେ ବିଶିଷ୍ଟ ଗାୟକମାନଙ୍କ ଦ୍ୱାରା ପରିବେଷିତ ହେଉଥିବା ସ୍ୱରଲିପି ଗୀତିକାମାନଙ୍କ ମଧ୍ୟରୁ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପାଇଁ ଦୁଇଟି, କବିବର ରାଧାନାଥଙ୍କ ପାଇଁ ଦୁଇଟି ଓ ବାଗ୍ମୀ ବିଶ୍ୱନାଥ କରଙ୍କ ପାଇଁ ଗୋଟିଏ ଗୀତିକା ସେ ରଚନା କରିଛନ୍ତି ।

ବିଶ୍ୱକବି ରବୀନ୍ଦ୍ରନାଥଙ୍କୁ ସେ 'ପ୍ରାଚୀ-ଭାଲ-ଟୀକା ତାରୁଣ୍ୟ-ପ୍ରବୋଧା', ସାର୍ବଭୌମ କବିବର ବୋଲି ସମ୍ବୋଧନ କରିଛନ୍ତି । 'ଭାରତ-ହୃଦ-କୁମୁଦ ପ୍ରକାଶକ' 'ସୁରଗୁରୁ' 'ଚିର ତରୁଣ'ଙ୍କ ଆଦର୍ଶ ସ୍ପର୍ଶରେ ମୃତଧରା ସଞ୍ଜୀବନୀ ସିକ୍ତ ହେଲା । 'ଉଷ୍ମ ଅଙ୍କୁରିଲେ' 'ମରଣେ ଜୀବନ ଭରିଗଲା ।'

ଶିଶିର-ହତ-ପଲ୍ଲବ ତରୁ-ଗାତ୍ର
ଶ୍ୟାମ-ଅଇଶ୍ୱର୍ଯ୍ୟେ ପୁଲକିଲା ।

ରବୀନ୍ଦ୍ରନାଥଙ୍କୁ ଆମନ୍ତ୍ରଣ କରାଇ ବିଚ୍ଛନ୍ଦଚରଣ ଲେଖିଛନ୍ତି, ଆପଣଙ୍କ ପ୍ରଭାବରେ ଅତୀତର ନର୍ମୋକରୁ ମୁକ୍ତ ହୋଇ ଜଗତ ନୂଆ ଦ୍ୟୁତିକୁ ଧାରଣ କରୁଛି । ହେ ନବୀନର ପ୍ରବୋଧ । ପ୍ରାଚୀନର ଘୋର ନିଶା ପାହି ଆସୁଛି । ପ୍ରଭାତୀ ତାରା ଉଇଁଲାଣି । ନବଜ୍ୟୋତିର ଧାରା ଛୁଟି ଆସୁଛି । ଏହି ନବୋଦୟ ବେଳେ,

'ତୁମର ପ୍ରୟୋଜନ ଅଛଇ କବିରାଣ
ଏ ବାସରେ ଜଣାଇ ଏତିକି ହେ ।
ଆସ ରବୀନ୍ଦ୍ର ଆଜ ଷିତିକି
ଉଛି ଯାଇ ଉତ୍କଳ-ମତିକି ।

ନବୀନ ଯୁଗର ନବଜ୍ୟୋତିର ବାର୍ତ୍ତାବହ କବିଗୁରୁ ରବୀନ୍ଦ୍ରନାଥଙ୍କ ଆଦର୍ଶ ଓ ପ୍ରେରଣାକୁ ହାର୍ଦ୍ଦିକ ସ୍ୱାଗତ ଜଣାଇଛନ୍ତି ବିଚ୍ଛନ୍ଦଚରଣ ।

କବିବର ରାଧାନାଥ ରାୟଙ୍କ 'ନବ ଉତ୍କଳଗୌରବ' 'ଅଶେଷଶ୍ରୀ ରସ-ପଣ୍ଡିତ' 'ରସ ଆକର ହୃଦ ରସିକ କବି' 'ନବୀନ କବିକୁଳ-ମୁକୁଟ-ମଣି' ବୋଲି ସମ୍ବୋଧନ କରି ବନ୍ଦନାଚରଣ କରିଅଛନ୍ତି, "ହେ ଚମ୍ପକ ! ତୁମ୍ଭର ଅଙ୍କିତ 'ଉତ୍କଳ ପ୍ରକୃତିର କମ୍ର ମାଧୁରୀ' ଅବଲୋକନ କରି 'ସୁଷମାଲୋଭୀ'ମାନେ ରସକ୍ଷୁଧା ଓ ସୌନ୍ଦର୍ଯ୍ୟ ପିପାସା ମେଣ୍ଟାଉ ଅଛନ୍ତି । ଆପଣ ଯେଉଁ ଆନନ୍ଦ ସରୋବର ସର୍ଜନା କରି ଯାଇଅଛନ୍ତି, ତହିଁରେ ନିମଜ୍ଜିତ ହୋଇ କିଏ ବା ଆଜି ପ୍ରମୋଦିତ ହେଉନାହିଁ !

'ବଧୂ କରଣ ସମ ତୁମ୍ଭର ଗୀତ
ବାଧୁଥିଲା ପାଠକ ଜନର ଚିତ୍ତ ।'

'ହେ କଳ୍ପନା-ଲୋକସ୍ରଷ୍ଟା, ରସରାଜ୍ୟ-ବିହାରୀ' କବିବର ! ଆପଣଙ୍କ ସମଧର୍ମୀମାନେ ଅଚିରେ ଏ ଦେଶରେ ଉଦ୍ଭବ ହୁଅନ୍ତୁ । 'ହେ ଉତ୍କଳ ଜନନୀ ଦୁଲାଳ !' ସବିନୟ ନିବେଦନ କରୁଛୁ ଆମର ଭକ୍ତି ପୁଷ୍ପମାଳା ଗ୍ରହଣ କରନ୍ତୁ ଏବଂ ଆଜି ଉଦ୍‌ଘାଟିତ ହୋଇଥିବା ଆପଣଙ୍କ ଏହି ପ୍ରସ୍ତର ମୂର୍ତ୍ତିର ଶୁଭ୍ର ଲଲାଟରୁ ଆମ୍ଭମାନଙ୍କ ପାଇଁ ଆପଣଙ୍କ ପ୍ରେରଣାର ଅନିବାର ଧାରା ବର୍ଷିତ ହେଉଥାଉ ।

ବିଶ୍ୱନାଥ କରଙ୍କୁ 'ସାହିତ୍ୟ ପୁରୋଧା' 'କର୍ମୀବର' 'ନରୋତ୍ତମ' 'ସୁଧୀବର' ବୋଲି ସମ୍ବୋଧନ କରି ବନ୍ଦନାଚରଣ କରିଅଛନ୍ତି, ବିଶ୍ୱାସର ପୀଠରେ ବଳି ହେବା ପାଇଁ କିଏ ଆଉ ଆପଣଙ୍କ ଭଳି ଆଗୁସାର ହୋଇ ଆସିବ ? ଆପଣ ଗଲା ଦିନୁ ବ୍ୟକ୍ତିତ୍ୱର ଖମ୍ବମାନ ଦିନକୁ ଦିନ ଏ ଦେଶରେ ଦୀନତର ହୋଇ ଯାଉଛନ୍ତି । ଆପଣ ଗଲା ଦିନ ଠାରୁ ସାହିତ୍ୟ ବନରୁ କଦାଚିତ କେବେ କେଶରୀ ଗର୍ଜନ ଶୁଣିବାକୁ ମିଳୁଛି ; ଅର୍ଥାତ୍ ସାହିତ୍ୟ ବନରେ କେଶରୀ ଗର୍ଜନ ଦୁର୍ଲ୍ଲଭ ହୋଇଗଲାଣି । ହେ ଋଷିରୂପଧର ! ଆପଣଙ୍କ ପରି ଆଉ ଋଷି ଜୀବନ ଯାପନ କରୁଥିବା ବ୍ୟକ୍ତି ଆଉ କିଏ ଏହି ଦେଶରେ ଅଛନ୍ତି କି ? ଆପଣଙ୍କ ବିନା ଆଉ କାହା ହାତ ବା ସାହିତ୍ୟ-ଲତାକୁ ରଞ୍ଜା ଯୋଗାଇ ସମାଜ ଅଙ୍ଗରେ ମଡ଼ାଇ ଦେବ ।

"ଗଲ ତିନି ଦଶହରା ହେ
ମୁହଁ ଲୁଚାଇଦେଇ ଚଳିଲ ସରଗେ
ଝରାଇ ଅଶ୍ରୁ ଅସରା ହେ ।"

ଏହିଭଳି ଅନର୍ଗଳ ଭାବରେ ଏହି ମନୀଷୀ ବନ୍ଧୁଙ୍କ ପାଇଁ ବନ୍ଦନାଚରଣ ଯେଉଁ ଭାବୋଚ୍ଛ୍ୱାସ ପ୍ରକାଶ କରିଛନ୍ତି, ତାହା ତାଙ୍କ ପକ୍ଷପାତ ରହିତ ଗୁଣଗ୍ରାହୀ ହୃଦୟବତ୍ତାର

ପରିଚୟ ଦିଏ । 'ବିଶ୍ୱକବି ରବୀନ୍ଦ୍ରନାଥ' ଶୀର୍ଷକ ଦୁଇଟି ଗୀତିକା ମଧ୍ୟରୁ ପ୍ରଥମେ ଗୀତିକାକୁ ସେ 'ଶ୍ରୀରାଧା ବାଉଳୀ ପ୍ରେମରସ ବୃଜ' ବୃତ୍ତରେ ଏବଂ ଦ୍ୱିତୀୟ ଗୀତିକାକୁ ଏକ ଓଡ଼ିଶୀ ସଙ୍ଗୀତ ସ୍ୱରରେ ରଚନା କରିଥିଲେ । ଏ ଗୀତ ଦୁଇଟି ବହୁବାର ଉତ୍କଳ ସାହିତ୍ୟ ସମାଜ ଓ ବଙ୍ଗୀୟ ସାହିତ୍ୟ ପରିଷଦର ମିଳିତ ଉତ୍ସବ ରବୀନ୍ଦ୍ର ଶ୍ରାଦ୍ଧ ବାର୍ଷିକୀରେ ଗାନ କରାଯାଇଥିଲା ଓ ଶ୍ରୋତୃବର୍ଗଙ୍କୁ ମୁଗ୍ଧ କରି ଦେଇଥିଲା । 'କବିବର ରାଧାନାଥ ରାୟ' ଶୀର୍ଷକ ଦୁଇଟି ଗୀତିକା ମଧ୍ୟରୁ ପ୍ରଥମ ଗୀତିକାକୁ ରାଗ କଳହଂସ କେଦାରରେ ଓ ଦ୍ୱିତୀୟ ଗୀତିକାକୁ ରାଗ କାମୋଦୀରେ ବିଚ୍ଛନ୍ଦଚରଣ ରଚନା କରି ଅଛନ୍ତି । ରାଧାନାଥଙ୍କ ପ୍ରୟାଣ ଦିବସ ଚୈତ୍ର ପୂର୍ଣ୍ଣିମା ତିଥିରେ ଆୟୋଜିତ ଶ୍ରାଦ୍ଧୋତ୍ସବରେ ଏହି ଗୀତିକା ଗାନ କରାଯାଉଥିଲା । ଦ୍ୱିତୀୟ ଗୀତିକାଟି ଗାନ କରାଯାଇଥିଲା ଉତ୍କଳ ସାହିତ୍ୟ ସମାଜ ଆନୁକୂଲ୍ୟରେ ଶ୍ରୀ ରାମଚନ୍ଦ୍ର ଭବନରେ କବିବରଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ଉତ୍ସବ ଉପଲକ୍ଷେ ଆୟୋଜିତ ସାଧାରଣ ସଭାରେ । 'ବିଶ୍ୱନାଥ କର' ଶୀର୍ଷକ ଗୀତଟିକୁ ବିଚ୍ଛନ୍ଦଚରଣ ରସକୁଲ୍ୟା ରାଗରେ ରଚନା କରି ଓ ତାହା ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ଅନୁଷ୍ଠିତ ବିଶ୍ୱନାଥ କରଙ୍କ ଶ୍ରାଦ୍ଧୋତ୍ସବରେ ଗାନ କରାଯାଇଥିଲା ।

'ଉତ୍କଳ-କେଶରୀ ମଧୁସୂଦନ' ଶୀର୍ଷକ କବିତାକୁ କଳସା ରାଗରେ, ଏବଂ 'ଉତ୍କଳମଣି ଗୋପବନ୍ଧୁ' ଶୀର୍ଷକ ଗୀତକୁ ଶଙ୍କରାଭରଣ ରାଗରେ ଓ 'ପିଲାଙ୍କ-ଉତ୍କଳମଣି' ଶୀର୍ଷକ କବିତାକୁ କଳସା ରାଗରେ ବିଚ୍ଛନ୍ଦଚରଣ ରଚନା କରିଛନ୍ତି । ବାଳକ ବାଳିକାମାନଙ୍କ ପାଇଁ ଉଦ୍ଦିଷ୍ଟ 'ପିଲାଙ୍କ ଉତ୍କଳମଣି' କବିତାରେ ବିଚ୍ଛନ୍ଦଚରଣ ଲେଖିଛନ୍ତି—

'ଏ ଦେଶ ଲୋକଙ୍କ ମନୁ ଛଡ଼ାଇଲ ଭୟ
କହିଲ ଧରିଲେ ଦମ୍ଭ ହୁଏ ନଷ୍ଟେ ଜୟ ।'

× × ×

'ଯାହା କଥା କରିଥିଲ ସତତ ଚିନ୍ତିକା
ଆମ୍ଭେମାନେ ହେଁ ଦେଶ ବାଳକ ବାଳିକା' ।

ଗୋପବନ୍ଧୁଙ୍କ ପ୍ରାଣପ୍ରିୟ ଭୂମିର ଆମେ ବାଳକ ବାଳିକା, ଗୋପବନ୍ଧୁଙ୍କ ସତତ ଧ୍ୟେୟ ଭୂମିର ଆମେ ବାଳକ ବାଳିକା, ଏହାଠାରୁ ବଳି ଓଡ଼ିଆ ବାଳକ ବାଳିକାମାନଙ୍କର ଆଉ କେଉଁ ଗୌରବାତ୍ମ୍ୟ ପରିଚୟ ବା ଥାଇପାରେ ? ଗୋପବନ୍ଧୁଙ୍କୁ ବିଚ୍ଛନ୍ଦଚରଣ —

'ଉତ୍କଳର ଦୁଃଖ ବ୍ୟାଧି ନାଶକ ଭିଷକ
ଉତ୍କଳେ ସ୍ୱରାଜ୍ୟ-ମନ୍ତ୍ର ଆଦ୍ୟ ଉଚ୍ଚାରକ'

ବୋଲି ସମ୍ବୋଧନ କରି କହିଛନ୍ତି,

'ଆହେ ଉତ୍କଳ ରତ୍ନେନ୍ଦୁ
ପ୍ରୟୋଜନ ଅଛି ତୁମ୍ଭ ଆସ ଗୋପବନ୍ଧୁ ।'

ହେ ଓଡ଼ିଶାର ପୂର୍ଣ୍ଣଚନ୍ଦ୍ରମା, ପୁନଅସ୍ତନ । ଆଉ ଥରେ ଏ ପୃଥିବୀକୁ ଅବତରଣ କରି ଆସ ଏବଂ ତୁମ ଆଦର୍ଶ ସ୍ତବକୁ ଏ ଦେଶ ଓ ଜାତିକୁ ଉନ୍ନୀତ କର । ବଛନ୍ଦଚରଣ ଗାଇଛନ୍ତି,

'ଭେଦ ହଠି ମରୁଅଛୁ ଅନ୍ଧ ମୋହ ସ୍ୱାର୍ଥେ
ଶିଖିଅଛୁ ଅର୍ଥପୂଜା ଭୁଲି ପରମାର୍ଥେ'

× × ×

'ଜୀବନ ସ୍ରୋତ ଏ ଦେଶ ହୋଇଛି ପଙ୍କିଳ
ଦୁର୍ଲ୍ଲଭ ହେଲାଣି ସଚ୍ଚରିତ୍ର ଅନାବିଳ ।'

ତେଣୁ ବଛନ୍ଦଚରଣଙ୍କ ହୃଦୟରୁ ଏକ ଆବାହନୀ ସ୍ୱର ଉଠିଛି,

'ପ୍ରୟୋଜନ ଅଛି ତୁମ୍ଭ ଆସ ଗୋପବନ୍ଧୁ ।'

ପୂର୍ଣ୍ଣଚନ୍ଦ୍ର ଭାଷାକୋଷକାର ଗୋପାଳଚନ୍ଦ୍ର ପ୍ରହରାଜ, ଶଶୀଭୂଷଣ ରାୟ, ଲକ୍ଷ୍ମୀକାନ୍ତ ଚୌଧୁରୀ, ବିପିନ ବିହାରୀ ଚୌଧୁରୀ, ବାମଣ୍ଡା ରାଜକୁମାର ବଳଭଦ୍ର ଦେବ, କବିଶେଖର ଚନ୍ଦ୍ରମଣି ମହାନ୍ତି ଆଦି ଓଡ଼ିଶାର କୃତୀ ସନ୍ତାନମାନଙ୍କ ପାଇଁ ଗୀତିକା ରଚନା କରିଛନ୍ତି ବଛନ୍ଦଚରଣ । କବି କଳହଂସ ଗୋପାଳକୃଷ୍ଣ, ଭକ୍ତକବି ମଧୁସୂଦନ ରାଓ, ପଲ୍ଲୀ କବି ନନ୍ଦ କିଶୋର ବଳ, ନାରୀ କବି କୁନ୍ତଳାକୁମାରୀ ଏବଂ ଆର୍ଯ୍ୟର୍ଷି ହରିହର, କର୍ମବୀର ଗୌରୀଶଙ୍କର ରାୟ ଓ ପଠାଣି ସାମନ୍ତଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ରାଗ ରାଗିଣୀରେ ସେ କବିତାମାନ ପ୍ରଣୟନ କରିଛନ୍ତି । ବିଶ୍ୱବିଖ୍ୟାତ ବୈଜ୍ଞାନିକ ସି. ଭି. ରମଣଙ୍କ ଓଡ଼ିଶା ଆଗମନ ଉପଲକ୍ଷେ ଏକ ସ୍ୱାଗତ ଗୀତିକା ବଛନ୍ଦଚରଣ ରଚନା କରିଛନ୍ତି । ମହାତ୍ମା ଗାନ୍ଧୀଙ୍କୁ ଲକ୍ଷ୍ୟ କରି ବଛନ୍ଦଚରଣ ଲେଖିଛନ୍ତି,

'ଅଧୋଗତ ଏ ଦେଶ ତବ ପଦ ପରଶ
ଲଭି ହୋଇଗଲା ସଜୀବିତ •

ମାନସ-ପକ୍ଷାଘାତ ହେଲେ ତା ହେଲ ହତ
ନଗଣ୍ୟ ପଥରୁ ସ୍ଖଳିତ
ହେ ମହାତ୍ମା !'

× × ×

'କଣ୍ଟକ କଣ୍ଟକର ମୁକୁଟ ବନ୍ଧି ଶିର
ତ୍ୟାଗ ଛନ୍ଦ ପରିଧାନି
ଶୃଙ୍ଖଳ କୋଟି ଜନ ଅନ୍ତର ସିଂହାସନ
ଈଶ୍ୱର ହୋଇଲ ବିଜ୍ଞାନୀ ।
ହେ ମହାତ୍ମା !'

ସତ୍ୟବାଦୀ ବନ ବିଦ୍ୟାଳୟର ଆଶ୍ରମ-ପରିବେଶ ମଧ୍ୟରେ ଋଷି ପ୍ରତିମ ଆଚାର୍ଯ୍ୟ ହରିହରଙ୍କୁ ଶିକ୍ଷାଗୁରୁ ରୂପେ ପାଇଥିଲେ ବିଚ୍ଛନ୍ଦଚରଣ । ଜୀବନର ପ୍ରାକ୍‌କାଳର ସେହି ମଧୁମୁଖ-ମଖା ସ୍ମୃତି ତାଙ୍କ ଚିତ୍ତରେ ସର୍ବଦା ଜାଗରୁକ ଥିଲା, ସେ ସେଥିରୁ ପ୍ରେରଣା ଲାଭ କରୁଥିଲେ, ଉଦ୍‌ବୋଧିତ ହେଉଥିଲେ । 'ଆଚାର୍ଯ୍ୟ ହରିହର' ଶୀର୍ଷକ କବିତାରେ ସେ ଲେଖିଛନ୍ତି—

'ଗୁରୁ ବୋଲି ଡାକିବାର ପୂର୍ଣ୍ଣ ଅଧିକାର
ଥିବାରୁ ଗରବେ ଆଜି ଭରେ ମୋ ଅନ୍ତର ।
ଗୁରୁଦେବ 'ସତ୍ୟବାଦୀ' ଶିକ୍ଷା ଆୟତନେ
ଆଚାର୍ଯ୍ୟ ବିଗ୍ରହ ତୁମ୍ଭ ଯେ ଦିନ ନୟନେ ।
ସାଧକ କୁଟୀର ମଧ୍ୟେ ଦେଖିଲି ପ୍ରଥମେ
ଭାଳିଲି ଆଣିଲା ଭାଗ୍ୟ ସତେ ସେ ଆଶ୍ରମେ ।'

ସେଦିନର ସେ ଅନୁଭୂତ ପ୍ରାଚୀନ ଋଷି ଯୁଗର ଆଶ୍ରମରେ ଆଚାର୍ଯ୍ୟଙ୍କ ଦର୍ଶନ କଲାପରି ବିଚ୍ଛନ୍ଦଚରଣଙ୍କୁ ବୋଧ ହେଲା ।

'ଯହିଁ ଉଠି ବେଦ ଧ୍ୱନି, ଜଳି ହୋମାନଳ
ଦହୁଥିଲା ଭୂଭାରତ କଳୁଷ ପଟଳ ।'

ସେହି ସ୍ମୃତିରେ ଉଦ୍‌ବୋଧିତ ହୋଇ ବିଚ୍ଛନ୍ଦଚରଣ ଲେଖିଛନ୍ତି, 'ହେ ଗୁରୋ ! ପୂର୍ଣ୍ଣୀ ପୂର୍ତ୍ତିର ନିଳୟ ଆପଣଙ୍କ କ୍ଷୀଣ ଦେହ ସାକ୍ଷାତ ଦେବାୟତନ ସମ ବନ୍ଦନୀୟ । ଏ ଜଗତର 'ଚର୍ମସାର ସୁଖ ରାଜିକୁ ପାଦରେ ଦଳି ଦେଇ ସାଧନାର ଯେଉଁ ମାର୍ଗରେ ଆପଣ ଗଲିଛନ୍ତି, ସେହି ପଥପାର୍ଶ୍ୱରେ ଠିଆ ହୋଇଥିବା ଅଭାଜନ ଗୋଷ୍ଠୀ ମଧ୍ୟରୁ

ଜଣେ ହୋଇ ମୁଁ କୃତାଞ୍ଜଳି ପୁଟରେ ମାଗୁଛୁ, 'ଚରଣ ରଜ ଯାଅ ଗୃହେ ଦେଇ ।'

ଏହା ଅତ୍ୟନ୍ତ ସ୍ପଷ୍ଟ ଯେ ବଚ୍ଛନ୍ଦଚରଣଙ୍କ ରଚିତ ସ୍ମରଣିକା ଗୀତିକାରେ ତାଙ୍କ ମହନୀୟ କବିତ୍ୱର ଯେଉଁ ସ୍ୱରଟି ପରିସ୍ଫୁଟ ହୋଇଛି ତାହା ହେଉଛି ଶ୍ରଦ୍ଧାଳିତ ଆନ୍ତରିକତା । ଅନୁପନ୍ଥୀ ହୁଅନ୍ତୁ ଅବା ପରପନ୍ଥୀ ହୁଅନ୍ତୁ ଅଥବା ଉଦାସୀନ ହୁଅନ୍ତୁ, ଯେଉଁମାନଙ୍କଠାରେ ଆଦର୍ଶବାଦୀ କର୍ମଧାରା ଚରିତବତ୍ତା ଓ ପାରମାର୍ଥିକ ନିଷ୍ଠା ସେ ଲକ୍ଷ୍ୟ କରିଛନ୍ତି, ସେମାନଙ୍କ ପାଇଁ ତାଙ୍କ ବାଣୀ ପ୍ରଶଂସା ଓ ସ୍ତୁତି ମୁଖର ହୋଇଅଛି ।

ଶୋକ ଗୀତିକା ମଧ୍ୟରେ 'ମୋ ସୁନାଗୃହ' ସ୍ଥାନ ପ୍ରଥମ । ବଚ୍ଛନ୍ଦଚରଣଙ୍କର ଜନ୍ମମାସର ପ୍ରଥମ ସନ୍ତାନ, ରାଧାଗୋବିନ୍ଦଙ୍କର ବିୟୋଗରେ ଏ ଗୀତିକାଟି ରଚିତ ହୋଇଅଛି । ଶଙ୍କରାଭରଣ ରାଗର କାରୁଣ୍ୟ ମୂର୍ଚ୍ଛନାକୁ ବନ୍ଧନ କରି ମଥିତ ପିତୃ-ହୃଦୟର ବେଦନା ଆତ୍ମପ୍ରକାଶ କରିଛି । କବି ଲେଖିଛନ୍ତି,

"ଦୁଃଖ-ଅନ୍ଧାରେ ଜହ୍ନ-ଆଲୁଅ ହୋଇ
ସେ ପୁରୁଁ ପରା ଆସିଥିଲୁ ଉଣ୍ଲାଇ
ରଙ୍କ ରତନ ମୋର
ଅକାଳେ ଘେନଗଲା କାଳ-ତସ୍କର ।"

କବି ଅନୁଭବ କରୁଥିଲେ ଯେ 'ସୁନାଗୃହ, ଦୁଃଖିସଙ୍ଖାଳି' ରାଧାଗୋବିନ୍ଦ ଏ ପୁରର ବସ୍ତୁ ନଥିଲା । ସେ ଥିଲା 'ସେ ପୁର'ର ବସ୍ତୁ । ଏ ପୁରକୁ ଧନ୍ୟ କରିବା ପାଇଁ, ଶୋଭାରଙ୍କ ବାପର କବିନୟନକୁ ପବିତ୍ର କରିବା ପାଇଁ ଏ ପୁରରେ ଦୁର୍ଲ୍ଲଭର ସ୍ପର୍ଶ ଦେବା ପାଇଁ ସେ ଓହ୍ଲାଇ ଆସିଥିଲା 'ସେପୁର'ରୁ । ଅଢ଼େଇ ମାସ କାଳ ରୋଗ ସଙ୍ଗରେ ଯୁଝି ଯୁଝି ରାଧାଗୋବିନ୍ଦ ଆଖି ବୁଜିବାରୁ କବି ଭାବିଲେ,

'ମୃତ୍ୟୁ ବଇଦ ହୋଇ
ଆରୋଗ୍ୟଧାମେ ବାଟ ନେଲା କଢ଼ାଇ ।"

ରୋଗ ଧାମ 'ଏ ପୁର'ରୁ ଆରୋଗ୍ୟ ଧାମ 'ସେ ପୁର'କୁ ମୃତ୍ୟୁ-ବୈଦ୍ୟ ବାଟ କଢ଼ାଇ ନେଇଗଲା । କବି ସେହି ପୁତ୍ରକୁ ଲକ୍ଷ୍ୟ କରି କହୁଛନ୍ତି, 'ଯା, ଯେଉଁ ଦେଶକୁ ଯାଉଛୁ । ସେଠାରେ ମୋର ପ୍ରିୟଜନମାନେ ଆଗରୁ ଯାଇ ରହିଛନ୍ତି । ତାଙ୍କୁ ଆମ ଏଠିକାର ବାରତା ଦେବୁ ।"

"ତାଙ୍କୁ ଦେବୁ ବାରତା
ମନେ ମୋ ଅଛୁ ତାଙ୍କ ସ୍ନେହ ମମତା ।"

ରୁ ମୋର ପ୍ରିୟତମ ବୋଲି ଜାଣି ମୋ ପ୍ରିୟଜନମାନେ ସେଠାରେ ତୋତେ "କାଖେ କୋଳେ ଘେନବେ ।" ମୁଁ ସେଠାରେ ନଥିଲେ ବି ସେମାନେ ମୋର "ପ୍ରତିନିଧି" ହେବେ । ପାରିଜାତ ଫୁଲ ମାଳରେ ତୋ ଗଳା ମଣ୍ଡିବେ ।

"ହସିବୁ କୋଟିଗୁଣେ ଆହୁ ସୁନ୍ଦର
ସୁନ୍ଦର ମେଳେ କରିବୁରେ ବିହାର
ଶୋଭାରଙ୍କ ତୋ ବାପ
ତୋ ଶୋଭା ନ ଦେଖିଲି ପାଇଛୁ ଶାପ ।"

କବି ନିଜକୁ ଅଭିଶପ୍ତ ବୋଲି ମନେ କରି ଅଛନ୍ତି । ତାଙ୍କର 'ଶୋଭାରଙ୍କ' ନେତ୍ରରେ ସେ ଏଠାରେ କିମ୍ବା ସେଠାରେ କେଉଁଠି ତାଙ୍କ 'ନେତ୍ର ସଙ୍ଗୀନ'କୁ ଦେଖିପାରୁ ନାହାନ୍ତି । ଏଠାରେ କବି ରହି ଯାଇଛନ୍ତି, ଅଥଚ ନେତ୍ରସଙ୍ଗୀନ ନାହିଁ । ସେଠାରେ ନେତ୍ର ସଙ୍ଗୀନ ଅଛି, କିନ୍ତୁ କବି ନାହାନ୍ତି । ତେଣୁ ସେ ରୂପମାଧୁରୀ ତାଙ୍କ ନେତ୍ରରେ ଅମୃତ ଅଞ୍ଜନ ଦେଉନାହିଁ ।

"ସୁନ୍ଦର ମେଳେ କରିବୁରେ ବିହାର ।"

କବିଙ୍କ ଏହି ଉକ୍ତିରେ 'ସେ ପୁର' ହେଉଛି ଯଥାର୍ଥ ସୁନ୍ଦର ପୁର ବୋଲି କବି ବିଶ୍ୱାସ ପ୍ରକଟିତ ହୋଇଅଛି । କବିଙ୍କ 'ପ୍ରିୟଜନ'ମାନଙ୍କ ମଧ୍ୟରେ ତାଙ୍କ ସଂପର୍କୀୟା ଭଉଣୀ ସ୍ନେହଶୀଳା କୁନ୍ଦଅପା, କଇଁଅପା ଓ ନିଜ ଭଉଣୀ ଇନ୍ଦୁ ଅପାଙ୍କ ସାଙ୍ଗକୁ ପିତାମହୀ ଶ୍ରୀମତୀ ଦେବୀ ବହୁଦିନୁ ପରଲୋକରେ ବାସ କରୁଥିଲେ । ବାଞ୍ଛାନିଧି ଲେଖିଛନ୍ତି, ତାଙ୍କ ପିତାମହୀ 'ଲୋକାନ୍ତରିତା ହେବା ପରେ' ତାଙ୍କ 'ପରିବାରରୁ ରୂପର ଚନ୍ଦ୍ରିକା ଅନ୍ତର୍ହିତ ହୋଇ ଯାଇଛି' । ସେମାନଙ୍କ ସଙ୍ଗରେ ଥିବେ କବି ପ୍ରିୟତମା 'ଚନ୍ଦ୍ରଚନ୍ଦ୍ରିକା ମନୋରମା ପ୍ର—' । ପରିଣୟ ସୂତ୍ରରେ ଯିଏ ସେ ବାନ୍ଧି ହୋଇ ପାରିଲେ ନାହିଁ, କିନ୍ତୁ ତାଙ୍କ ସହିତ କବିଙ୍କ ଜନ୍ମ ଜନ୍ମାନ୍ତରର ଅଭୁଲା ପ୍ରଣୟ ସୂତ୍ର ଛିଣ୍ଡାଇ ଦେବାକୁ ସଂହାରୀ କାଳର ମଧ୍ୟ କ୍ଷମତା ନଥିଲା । କବିଙ୍କ 'ସୁନାଗୁନ୍ଦି'କୁ ଏଇମାନେ କାଖକୋଳ କରିବା କଥା କବି ଭାବନାକୁ ଆସିଛି । 'ସେପୁର' ସୌନ୍ଦର୍ଯ୍ୟ ସରୋବରରେ 'ସୁନାଗୁନ୍ଦି' କଇଁଫୁଲ ସଦୃଶ ଫୁଟି ଉଠିଥିବ ଏବଂ ଏ କାଖରୁ ସେ

କାଖ, ଏ କୋଳରୁ ସେ କୋଳ ହେଲବେଳେ ମଳୟ-ଆନ୍ଦୋଳିତ କଢିପରି ଇତସ୍ତତଃ ହେଉଥିବା କବି କହୁଛନ୍ତି,

> "ମଞ୍ଜୁପୁର ପ୍ରବାସେ
> ସୁଷମା-ସ୍ନେହେ ରହିଲଣି ଉପାସେ ।"

ଏ ପୁରକୁ ବିଚ୍ଛନ୍ଦଚରଣ 'ପ୍ରବାସ' ବୋଲି ବୋଧ କରୁଥିଲେ । ତାଙ୍କ 'ପ୍ରବାସୀ' ଚେତନା ତାଙ୍କୁ ଏଠାରେ ଦିବ୍ୟାଲୋକଚାରୀ, ସୁଷମାସ୍ନେହୀ ଆତ୍ମା ରୂପେ ପ୍ରକଟିତ କରିଛି । 'ସୁନାସ୍ୱପ୍ନ' କବିତାରେ ଗଭୀର ମର୍ମଦାହୀ ବ୍ୟଥାର ଅନ୍ତଃସ୍ରୋତ ରୂପେ କବିଙ୍କ ପାରଲୌକିକ ଶାଶ୍ୱତ ସୌନ୍ଦର୍ଯ୍ୟ-ବୋଧଗତ ଚେତନାର ପରିପ୍ରକାଶ ଘଟିଛି ।

ଶୋକ-ଗୀତିକା ମଧ୍ୟରେ ସଙ୍ଗୀତ ସମାଜ ପ୍ରତିଷ୍ଠାତା, ପ୍ରାଚୀ ସମିତିରେ ବିଚ୍ଛନ୍ଦଚରଣଙ୍କ ସହକର୍ମୀ ଓ ଅନ୍ତରଙ୍ଗତମ ବନ୍ଧୁ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ବିୟୋଗରେ ରଚିତ କବିତାଟି ଉଲ୍ଲେଖଯୋଗ୍ୟ । ଚନ୍ଦ୍ରାଦେଶୀୟ ରାଗରେ, 'ଆହା ଧନୁର୍ଦ୍ଧର ବୀରବର' ବୃତ୍ତରେ କାରୁଣ୍ୟର ଲହରୀ ତୋଳି ଏହି ଶୋକ ଗୀତିକାଟି ପ୍ରକଟିତ ହୋଇଛି । ଶ୍ରୀରାମଙ୍କ ମାୟା କଟାମୁଣ୍ଡ ଦେଖି ରାବଣପୁରୀ ଅଶୋକ ବନରେ ସୀତାଙ୍କର ବିଳାପର କାରୁଣ୍ୟକୁ ଏହି ରାଗରେ ଉତ୍କଳ-ଭୂମିକୁ ପ୍ଳାବିତ କରି ଦେଇଛନ୍ତି 'ବିଚିତ୍ର ରାମାୟଣ' କବି ବିଶ୍ୱନାଥ ଖୁଣ୍ଟିଆ । ସେହି କାରୁଣ୍ୟମୟୀ ରାଗିଣୀକୁ ବାହନ କରି ଲକ୍ଷ୍ମୀକାନ୍ତଙ୍କ ପରି ବନ୍ଧୁଙ୍କ ବିଚ୍ଛେଦ ଜନିତ ବ୍ୟଥାକୁ ରୂପ ଦେଇଛନ୍ତି ବିଚ୍ଛନ୍ଦଚରଣ । ଲକ୍ଷ୍ମୀକାନ୍ତଙ୍କ ପ୍ରୟାଣରେ ମଥିତ-ହୃଦୟ ବିଚ୍ଛନ୍ଦଚରଣ ଲେଖିଛନ୍ତି,

> "ମର୍ତ୍ତ୍ୟପୁର ସଙ୍ଗୀତକି କର୍ଣ୍ଣ
> ଆଉ କଲା ନାହିଁ ହେ ତୋଷଣ ?
> ଗୀର୍ବାଣ-ସଙ୍ଗୀତ ଲାଳସୀ ହୋଇଣ
> କଲ ଗୀର୍ବାଣପୁରୀ ଗମନ
> ହେ ସୁହୃଦ ।"

'ଏ ପୁର' ସଙ୍ଗୀତ ଆଉ ତୁମ କାନକୁ ରୁଚିଲା ନାହିଁ ବୋଲି 'ସେ ପୁର'ର 'ଗୀର୍ବାଣସଙ୍ଗୀତ' ଲାଳସୀ ହୋଇ ତୁମେ 'ସେପୁର'କୁ ଗମନ କଲ କି ? ଗନ୍ଧର୍ବ-ସଙ୍ଗୀତର ମୂର୍ଚ୍ଛନା ତୁମ କାନରେ ବାଜି ତୁମକୁ ସବୁ କଥା ଭୁଲାଇ ଦେଲା କି ?

ନହେଲେ ଏତେ ଅତର୍କିତରେ ଯିବାପାଇଁ ମନ ବଳାଇ କପର ? ଯେଉଁ 'ଗୀର୍ବାଣସ୍ୱର୍ଗ'କୁ ଯାଇଛ, ସେଠାରେ 'ଦିବଂଗତ ସାଧକଙ୍କ ମେଳରେ କୁତୁହଳରେ ବିଳାସ କରୁଥିଲା ବେଳେ',

> ଅମୃତ ଦୃଷ୍ଟିରେ ସେ ଧାମରୁ ସଦା
> ଚାହୁଁଥିବଟି ପ୍ରିୟ ଉତ୍କଳେ
> ହେ ସୁହୃଦ ।''
>
> 'ମୃତ୍ୟୁ ପରଦା ସେ ପାରେ ରହି
> ଦିଅ ବନ୍ଧଣ ଦିଅ ବତାଇ
> ତୁମ୍ଭ ଆଦରଣ ପ୍ରଦୀପର ଶିଖା
> ଯେମନ୍ତେ ରଖିବୁ ସଦା ଜଳାଇ
> ହେ ସୁକୃତ ।''

ପରଲୋକ ବିଶ୍ୱାସ ବିଚ୍ଛନ୍ଦଚରଣଙ୍କର ପ୍ରବଳ ଥିଲା । ପରଲୋକର ସ୍ତର ପରମ୍ପରା ବିଷୟରେ ସେ ନିଃସନ୍ଦେହ ଥିଲେ । ମାଡ଼ାମ୍ ବ୍ଲାଭାଟ୍ସ୍କି ଆଦିଙ୍କ ପ୍ରଭାବରେ ଥିଓଜଫି ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଥିଲା । ପ୍ଲାଞ୍ଚେଟ୍‌ରେ ପରଲୋକଗତ ଆତ୍ମାମାନଙ୍କୁ ଡାକି ରାତି ରାତି ଅନିଦ୍ରା ହୋଇ ସେମାନଙ୍କ ସହିତ କଥୋପକଥନ ଓ ପ୍ରଶ୍ନୋତ୍ତରରେ ମଜ୍ଜି ରହିବା ସଉକ ତାଙ୍କର ଥିଲା । ମୋ ଜାଣିବାରେ ବିଶ୍ୱର ବହୁ ମନୀଷୀମାନଙ୍କୁ ଓ ବିଶେଷ କରି ତାଙ୍କ ପ୍ରିୟଜନମାନଙ୍କୁ ସେ ପ୍ଲାଞ୍ଚେଟ୍‌ରେ ଡାକୁଥିଲେ । ପରଲୋକଗତ ପ୍ରିୟଙ୍କ ସହିତ ଆଳାପ କରିବାର ମାଧ୍ୟମ ଥିଲା ଏହି ପ୍ଲାଞ୍ଚେଟ୍ । ମୁଁ ଏହି ପ୍ଲାଞ୍ଚେଟ୍ ଡାକିବାକୁ ଏକ ଭୌତିକ କାଣ୍ଡ ମଣୁଥିଲା ବେଳେ ଓ ସଂଶୟ ଚକ୍ଷୁରେ ଦେଖୁଥିଲାବେଳେ ଗୁରୁଦେବ ତାହାକୁ ଏକ ସତ୍ୟାନ୍ବେଷୀ ଉପାଦେୟ ଜୀବିତ ବୋଲି ମଣୁଥିଲେ । ସେ ଆମ୍ଭମାନଙ୍କୁ ପ୍ଲାଞ୍ଚେଟ୍ ଛୁଆଉଁ ନଥିଲେ । କିନ୍ତୁ ନିଜେ ରାତି ରାତି ତଦ୍ଗତରେ ନିମଜ୍ଜିତ ହୋଇ ଇହଲୋକରୁ ପରଲୋକ ସହିତ ସମ୍ପର୍କ ସ୍ଥାପନ କରୁଥିଲେ । ଏହି ପ୍ଲାଞ୍ଚେଟ୍ ବିଳାସରୁ ତାହାଙ୍କୁ ଦୁଇଥର ଉନ୍ମାଦଗ୍ରସ୍ତ ହେବାକୁ ପଡ଼ିଥିଲା । ଯେଉଁଦିନ ଠାରୁ ସେ ପ୍ଲାଞ୍ଚେଟ୍ ଡାକିବାକୁ ନିବୃତ୍ତି ଗଲେ, ତା'ପର ଠାରୁ ଦୀର୍ଘକାଳ ସେ ସୁସ୍ଥ ଜୀବନ ଯାପନ କରିଥିଲେ ।

ବିଚ୍ଛନ୍ଦଚରଣଙ୍କ ପରଲୋକ ପ୍ରତି ତଥା 'ଗୀର୍ବାଣସ୍ୱର୍ଗ' ର ମହିମାମୟ ବିଭୂତିରେ ଦୃଢ଼ ବିଶ୍ୱାସ ଥିଲେ ହେଁ ସେ ଏହି ଇହଲୋକର ଜୀବନକୁ ଗଭୀର ଭାବରେ ସୁଖ

ପାଉଥିଲେ । ବଞ୍ଚିବାର ଆସ୍ୱାଦ ଘେନି ସେ ବଞ୍ଚିଥିଲେ । ବଳିଷ୍ଠ ଆଶାବାଦର ଉଜ୍ଜ୍ୱଳ ମୟୂଖ ତାଙ୍କ ଜୀବନପଥକୁ ଆଲୋକିତ କରୁଥିଲା । ସେ ମଣୁଥିଲେ ଯେ କବିକଳ୍ପଲୋକ (ଗୀର୍ବାଣପୁରୀ) ତାଙ୍କର ସ୍ୱଦେଶ ହେଲେ ହେଁ ଈଶ୍ୱରଙ୍କ ଇଚ୍ଛାରେ ସେ ନିର୍ଦ୍ଦିଷ୍ଟ କାର୍ଯ୍ୟ ସମ୍ପାଦନ ନିମିତ୍ତ ଏହି ଇହଲୋକକୁ ଆସିଛନ୍ତି ଓ କର୍ମ ସରିଲେ ସେ ପୁଣି ତାଙ୍କ ସ୍ୱଦେଶକୁ ଫେରିଯିବେ । ଈଶ୍ୱର-ଇଚ୍ଛା ବଳବତ୍ତର ଜାଣି ଈଶ୍ୱର ପ୍ରୀତ୍ୟର୍ଥେ ସେ ଅନ୍ତରର ଅନୁପ୍ରେରଣାର ବଶବର୍ତ୍ତୀ ହୋଇ ନିର୍ଭୀକ ଭାବରେ କର୍ମ କରି ଯାଉଥିଲେ । ତାଙ୍କର ଈଶ୍ୱର-ବିଶ୍ୱାସ ଓ ପରଲୋକ-ବିଶ୍ୱାସ ତାଙ୍କୁ ନିଜ କର୍ତ୍ତବ୍ୟ ସମ୍ପାଦନରେ ମନୋବଳ ଯୋଗାଉଥିଲା । ଆଦର୍ଶବାଦୀ ବିଚ୍ଛନ୍ଦଚରଣ ନିଜ ଆଦର୍ଶବାଦର ସ୍ରୋତକୁ ଅବ୍ୟାହତ ଓ ଜୀବନ୍ତ କରି ରଖିବା ପାଇଁ ଈଶ୍ୱର ଓ ପରଲୋକ ବିଶ୍ୱାସରୁ ପ୍ରେରଣା ଲାଭ କରୁଥିଲେ । ସେଥିପାଇଁ ମୃତ୍ୟୁକୁ ସେ ଦେହଲୀ ମାତ୍ର ବୋଲି ବିବେଚନା କରୁଥିଲେ । ପ୍ରେମ ଓ ମୃତ୍ୟୁ ସମ୍ପର୍କରେ ତାଙ୍କର ଧାରଣା ଥିଲା ଯେ ପ୍ରେମ ହେଉଛି ଅବିନାଶୀ ଓ ଶାଶ୍ୱତ ପଦାର୍ଥ, ତହିଁରେ ମୃତ୍ୟୁର ଅଧିକାର ନାହିଁ । ମୃତ୍ୟୁଞ୍ଜୟୀ ପ୍ରେମ-ମର୍ଯ୍ୟାଦାର ଆଲେଖ୍ୟ ଅଙ୍କନ କରିବା ପାଇଁ ତାଙ୍କ ଲେଖନୀ ନିତ୍ୟ ତତ୍ପର ଥିଲା । ତାଙ୍କ କବି ପ୍ରତିଭାର ଏକ ମୁଖ୍ୟ ସ୍ରୋତ ପ୍ରେମମୂଳକ କବିତାରେ ଆତ୍ମପ୍ରକାଶ କରିଛି । ପ୍ରେମୋନ୍ମାଦର ନିମଗ୍ନ ଚେତନାରେ ସେ ପ୍ରେମର ଯେଉଁ ଅଲୌକିକ ଅନୁଭୂତି ଲାଭ କରିଥିଲେ, ତାହାକୁ ସେ ସାରସ୍ୱତ ସମ୍ପଦ ରୂପେ ସଞ୍ଚି ଯାଇ ଅଛନ୍ତି । କିନ୍ତୁ ସେ ବରାବର କହୁଥିଲେ ଯେ ଅବର୍ଣ୍ଣନୀୟକୁ ବର୍ଣ୍ଣନା କରିବା ଏକ ଦୁରୂହ ବ୍ୟାପାର । ସେଥିପାଇଁ ତାଙ୍କର ପ୍ରେମମୂଳକ କବିତାର ସଂଖ୍ୟା ହିଁ ସବୁଠାରୁ ଅଧିକ ।

'କବିତା କୁମୁଦ' ଓ 'ଯାମିନୀ ଯାପନା' ଏହି ଦୁଇ ଗ୍ରନ୍ଥରେ ବିଚ୍ଛନ୍ଦଚରଣଙ୍କ ପ୍ରେମମୂଳକ କବିତାମାନ ସ୍ଥାନ ପାଇଛି । ଯାମିନୀଯାପନାରେ ପ୍ରେମିକ ପ୍ରେମିକାଙ୍କର ପଚିଶଟି ପତ୍ର ସନ୍ନିବେଶିତ ହୋଇଅଛି । ପତ୍ରାଳାପ ମାଧ୍ୟମରେ ହୃଦୟ ଉଦ୍‌ବେଳନକୁ ପ୍ରକାଶ କରିବା ରୀତି ପ୍ରେମ ଜଗତରେ ପ୍ରଶସ୍ତ । ଲାବଣ୍ୟବତୀ ଓ ଚନ୍ଦ୍ରଭାନୁଙ୍କ ପତ୍ରାଳାପ ପ୍ରଣୟର ଶେଷ ପତ୍ରାଳାପ ହୁଅନ୍ତା କାହିଁକି ? ଭଞ୍ଜଙ୍କ ପ୍ରେମ ସୁଧାନିଧି କାବ୍ୟର ନାୟକ ପତ୍ର ଲେଖିବାକୁ ଉତ୍ସାହ, ଉଦ୍ଦୀପନା ଲାଭ କରିଛି ଶରତ୍‌କାଳର ଚନ୍ଦ୍ର ରଜନୀରେ ।

'ନିର୍ମଳ ଚନ୍ଦ୍ର ମଣ୍ଡଳ ଶରଦେ ବିରାଜି
ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜି
ଚାହିଁ କୁମର କାତର
ଲେଖି ଆରମ୍ଭିଲା ଦମି ବିନୟେ ପତର ।'

ସକଳ ପ୍ରେମିକଙ୍କ ପତ୍ରଲେଖନର ମୂଳ ତତ୍ତ୍ୱଟି ନିହିତ ଅଛି ଉପେନ୍ଦ୍ର ଭଞ୍ଜଙ୍କ ଏହି ପଦକ ତଥାରେ । ଏକ ପ୍ରକାର ଆକୁଳ କାତରତା ପ୍ରେମଜଗତକୁ ଯୁଗେ ଯୁଗେ ଘାରି ରଖିଛି ବୋଲି ଏ ଜଗତରେ ଏତେ ପତ୍ରୋଦ୍‌ଗମ ହୋଇ ଚାଲିଛି । ତାହା ଉପେନ୍ଦ୍ର ଭଞ୍ଜଙ୍କ 'ବିନୟ ପତ୍ରର' ହୋଇପାରେ ଅଥବା ସନ୍ଥ ତୁଳସୀଦାସଙ୍କ 'ବିନୟ ପତ୍ରିକା' ହୋଇପାରେ । ପ୍ରେମାସ୍ପଦଙ୍କଠାରେ ପ୍ରଣୟ ନିବେଦନର ଦୁଇ ମୂଳ ସୂତ୍ର ହେଉଛି କାତରତା ଓ ବିନୟ । ବଚ୍ଛନ୍ଦଚରଣଙ୍କ ସମଗ୍ର ପ୍ରେମ କବିତା ମଧ୍ୟରେ ଏହି କାତରତା ଓ ବିନୟ ବିଭିନ୍ନ ଭଙ୍ଗୀରେ ରୂପଲାଭ କରିଛି, କେତେବେଳେ ପତ୍ରାଳାପ ଭଙ୍ଗୀରେ, କେତେବେଳେ କୋଇଲି ଗୀତ ଭଙ୍ଗୀରେ ତ କେତେବେଳେ ଚଉତିଶା ଭଙ୍ଗୀରେ ଅଥବା ସାଧାରଣ କବିତା ଭଙ୍ଗୀରେ । କବିତା କୁମୁଦରେ ସଙ୍କଳିତ ପତ୍ରାଳାପ ସଂଖ୍ୟା ହେଉଛି ବାର । କୋଇଲି ଦୁଇ, ପ୍ରେମମୂଳକ ଚଉତିଶା ଏକ, ବାରମାସୀ ଏକ, ଉକ୍ତିପ୍ରତ୍ୟୁକ୍ତି ଏକ ଓ ସାଧାରଣ ଭଙ୍ଗୀର କବିତା ଚଉଦ । 'ଭାବନା ଭାବନା'ର ପତ୍ର ସଂଖ୍ୟା ପଚିଶ । ଏକ ଶହ ଗୋଟି ପତ୍ରାଳାପ କବିତା ରଚନା କରି ସେ ଗ୍ରନ୍ଥକୁ 'ଶତପତ୍ର' ନାମରେ ପ୍ରକାଶିତ କରିବାର କାମନା ବଚ୍ଛନ୍ଦଚରଣ ପୋଷଣ କରୁଥିଲେ । 'ଶତପତ୍ର'ର ଗୋଟିଏ ଅର୍ଥ ହେଉଛି ଶହେଟି ଚିଠି ଓ ଅନ୍ୟ ଅର୍ଥଟି ହେଉଛି ଶତଦଳ ବିଶିଷ୍ଟ ପଦ୍ମ । ଏହି 'ଶତପତ୍ର' ଗ୍ରନ୍ଥ ଯଦି ଦିବାଲୋକ ଦେଖି ଥାଆନ୍ତା ତେବେ ଓଡ଼ିଆ ସାହିତ୍ୟ ଜଗତରେ ଯେ ଶହେଟି ପ୍ରେମ ପତ୍ରାଳାପ କବିତା ଏକତ୍ରିତ ହୋଇଥାନ୍ତା, ତାହା ନୁହେଁ, ପ୍ରେମ ଜଗତର ବର୍ଣ୍ଣାଢ୍ୟ ବୈଭବ ମେଳି ଶତଦଳ ବିଶିଷ୍ଟ ଏକ ପଦ୍ମ ଫୁଟିଯାଇଥାନ୍ତା । ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ ଯଥାର୍ଥରେ କହିଛନ୍ତି, 'ବଚ୍ଛନ୍ଦଚରଣଙ୍କ ସକଳ ଉତ୍କୃଷ୍ଟ କବିତା X X ଏହି ପତ୍ରାବଳୀ ମାଧ୍ୟମରେ ହିଁ ପ୍ରକାଶ ପାଇଛି । ନାୟକ ନାୟିକାଙ୍କର ପରସ୍ପର ପ୍ରତି ପତ୍ରାଳାପ ମାଧ୍ୟମରେ କବି କେବଳ କାଳ୍ପନିକ ବିଷୟବସ୍ତୁକୁ ଆଶ୍ରୟ ନ କରି ନିଜ ଜୀବନର ଘଟଣାଚକ୍ରକୁ ମଧ୍ୟ ପ୍ରକାରାନ୍ତରରେ ପ୍ରକାଶ କରିଯାଇଛନ୍ତି ।' ପ୍ରେମିକର ପ୍ରେମିକା ପାଖକୁ ପତ୍ର ଓ ପ୍ରେମିକାର ପ୍ରେମିକ ପାଖକୁ ପତ୍ର ଭେଦରେ ଏହି ପତ୍ରାଳାପ କବିତା ଦ୍ୱିବିଧ । ପୁରୁଷ ଓ ନାରୀ ମନର ପ୍ରେମାବିଷ୍ଟ ଭାବାବେଗଗୁଡ଼ିକ ଆଧୁନିକ ପରିପ୍ରେକ୍ଷୀରେ ଏହି ପତ୍ରମାନଙ୍କରେ ପ୍ରକାଶ ପାଇଛି । ଅବିବାହିତ ଜୀବନରେ ଏକନିଷ୍ଠ ପ୍ରେମର ଆର୍ତ୍ତି ଓ ଆବେଦନ ଏହି ପତ୍ରମାନଙ୍କର ବିଷୟବସ୍ତୁ । ବହୁ ଶଯ୍ୟାର ନାୟିକା ବା ବହୁଶଯ୍ୟାର ନାୟକଙ୍କ ଚିତ୍ର ବଚ୍ଛନ୍ଦଚରଣଙ୍କ ସାହିତ୍ୟରେ ଦେଖିବାକୁ ମିଳେ ନାହିଁ । ଏ ଦୃଷ୍ଟିରୁ ମଧ୍ୟ ବଚ୍ଛନ୍ଦଚରଣଙ୍କ ଅଭିରୁଚି ଏକାନ୍ତ ଭଞ୍ଜୀୟ । ଏକନିଷ୍ଠ ପ୍ରଣୟର ମାଧୁର୍ଯ୍ୟ ଓ ମର୍ଯ୍ୟାଦାର ପ୍ରତିମା ସ୍ୱୟଂ ସୀତାରାମ ଏବଂ ସୀତାରାମ ହେଉଛନ୍ତି ଭଞ୍ଜ ଓ ବଚ୍ଛନ୍ଦଚରଣଙ୍କ ଆରାଧ୍ୟ ଦେବତା । ରାଧାକୃଷ୍ଣଙ୍କ ଉଚ୍ଛୋଳ ପ୍ରେମଲୀଳା ମାଧୁର୍ଯ୍ୟ ଭଞ୍ଜ ଓ ବଚ୍ଛନ୍ଦଚରଣଙ୍କ ଲାଗି ହୃଦ୍ୟ ଓ ସାଧ୍ୟ, କାରଣ

ଭକ୍ତଙ୍କ ଲାଗି ରାଧାକୃଷ୍ଣ ହେଉଛନ୍ତି ନିତ୍ୟ ଲୀଳାସ୍ଥଳୀର ନିତ୍ୟ ଦମ୍ପତି । ସୀତାରାମ ଓ ରାଧାକୃଷ୍ଣଙ୍କ ପ୍ରୀତି ସେମାନଙ୍କ ଦୃଷ୍ଟିରେ ସେହି ଏକନିଷ୍ଠ ଦାମ୍ପତ୍ୟ ପ୍ରୀତି । ପ୍ରେମଜଗତରେ ଏକନିଷ୍ଠତାକୁ ପ୍ରକାଶ କରି ନାୟକ କେଦାର ଭୂଣ୍ଡରେ ଭାବ କହୁଛନ୍ତି,

‘ଜନମେ ଜନମେ କେଦାର ତୋ ଦାସ’
ଥିଲେ ଥାଅ ପଛେ ଯେଉଁଠି । (୪୯ ପୃଷ୍ଠା)

ଆଉ ଏକ ପତ୍ରରେ ଲେଖାଅଛୁ —

ଭୂଣ୍ଡ ମୋର ବରଅଙ୍ଗୀରେ
ପ୍ରେୟସୀ ଏକାଏ ଜୀବନେ କାହିଁକି ।
ଜୀବନେ ଜୀବନେ ସଙ୍ଗୀରେ’ (୧୭ ପୃଷ୍ଠା)

କେବଳ ଦେଶ ଦେଶାନ୍ତର ନୁହେଁ, ଶଚ୍ଚିଦାନନ୍ଦଙ୍କ ଭାଷାରେ ‘ଲୋକ ଲୋକାନ୍ତର’ର ବ୍ୟବଧାନ ସୃଷ୍ଟି ସେ ପ୍ରୀତିର ପ୍ରତିବନ୍ଧକତା କରିପାରେ ନାହିଁ । ସୁନା ଟଙ୍କା ଲୋଭୀ ସମାଜ ଅଥବା ପରିବାରର ପ୍ରତିବନ୍ଧକତା ବା କେତେ ମାତ୍ର । ‘କନକ-ଲୋଭୀ ଜନକ’ ମାନଙ୍କ ବିରୁଦ୍ଧରେ ପ୍ରଣୟୀ ପ୍ରଣୟିନୀ ବିଦ୍ରୋହର ସ୍ୱର ଉତ୍ତୋଳନ କରିଛନ୍ତି ତ ‘କନକ ମତ୍ସ୍ୟ’ ସମାଜ ଆଗରେ ବେଳେ ବେଳେ ନିଜକୁ ଅସହାୟ ମନେ କରିଛନ୍ତି, କିନ୍ତୁ ବିବାହ ହେଉକି ନ ହେଉ ନିଜ ପ୍ରେମରେ ଅଟଳ ରହିବା ପାଇଁ ଦୃଢ଼ ପ୍ରତିଜ୍ଞ ହୋଇ ରହିଛନ୍ତି । ସେମାନେ ନିଜକୁ ‘ଇଚ୍ଛା-କନିଆଁ ଇଚ୍ଛା-ବର’ ନାମରେ ନାମିତ କରିଛନ୍ତି । (ପୃଷ୍ଠା ୪୮) ପ୍ରେମର ସାର୍ଥକତା ପାଇଁ ମରଣକୁ ‘ଅମୃତ ସୋପାନ’ ରୂପେ ସେମାନେ ବାଛିଛନ୍ତି ।

“ଗୋଟି ପୋକ ରୂପେ ଅବତରି
ସୂତା ବୁଣିବାରେ ସମ୍ପାଗୋରି ।
ତୋ ଅଙ୍ଗରେ ପୀତାମ୍ବରୀ ଶୋଭି ଆରେ
ଖୋଷା ଭିତରେ ମୁଁ ଯାନ୍ତି ମରି ।” (ପୃଷ୍ଠା ୭୮)

ପ୍ରିୟସୀ ଅଙ୍ଗକୁ ପୀତାମ୍ବରୀ ଶୋଭି ହେବ, ଏହି ଆଶାରେ, ଏହି ଉଲ୍ଲାସରେ ନିଜକୁ ଖୋଷା ମଧ୍ୟରେ ମରିଯିବା ପାଇଁ ପ୍ରଣୟୀ, ଗୋଟି ପୋକ- ତପସ୍ୟାକୁ ଆଦରି ନେଉଛି । ନିଆଁ ଭିତରେ ରହି ଅଞ୍ଜନ ହେବାକୁ ଓ ଖଞ୍ଜନ ନେତ୍ରୀର ନୟନ ରଞ୍ଜନ କରିବା ସେବାକୁ ଆସିବାକୁ ସେ ଆଗ୍ରହୀ ହୋଇଛି । ପ୍ରଣୟୀ ହୃଦୟ ଖୋଲି କହୁଛି, “ଅଳତା-ରଞ୍ଜିତ ପଦ୍ମ ତୋର
ସୁଧା ସ୍ପର୍ଶିବାକୁ ନିରନ୍ତର—
ସ୍ୱର୍ଣ୍ଣକାର-କରୁଁ ପାହାର ସହିବ
ପାଉଁଜି ହେବାକୁ ପଥରର ।” (ପୃଷ୍ଠା ୭୮)

ପ୍ରଣୟୀର ଆଉ ଏକ ବାସନା—

ଶଙ୍କର ଶଙ୍କରୀ ମନାଇ ଗାଧୁଆ ଗୁଠର ଶିଳା ହେବ,
ଅଳତା-ରଞ୍ଜିତ ପଦଘସା ଲଭି
ହେଲେ ଜୀବନ୍ୟାସ ଅରଜିବ । (ପୃଷ୍ଠା ୭୯)

ମୃତ୍ୟୁ ଓ ଜୀବନ୍ୟାସ, ବନ୍ଧନ ଓ ପଲ୍ଲବନ ଉଭୟ ମଧ୍ୟରେ ଗଢ଼ିକରି ପ୍ରଣୟୀ ମହାବଳୀ ସହସ୍ରାର୍ଜ୍ଜୁନ ହେବାକୁ ଆଶା ପୋଷଣ କରିଛି ।

'ଚନ୍ଦ୍ରାଙ୍ଗୀରେ ! ତୋର ଅଙ୍ଗ ଧୋଇ
ଚନ୍ଦ୍ରୋତ୍ପଳା ନୀର ଆସେ ବହି,
ଅଡ଼ ନିବଡ଼େ ମୁଁ ଆଲିଙ୍ଗିବି ତୋରେ
ଅଧିର ସହସ୍ରାର୍ଜ୍ଜୁନ ହୋଇ ।' (ପୃଷ୍ଠା ୭୯)

ପୁରାଣ ପ୍ରସିଦ୍ଧ ମହାବଳୀ ସହସ୍ରାର୍ଜ୍ଜୁନ ତାଙ୍କର ଦ୍ୱିସହସ୍ର ଭୁଜରେ ରେବା ନଦୀର ସ୍ରୋତ ରୋଧ କରି ଜଳକ୍ରୀଡ଼ା କରିଥିଲେ । ପ୍ରଣୟ-ରସାସ୍ୱନରେ ସଞ୍ଜୀବିତ ହୋଇ ପ୍ରଣୟୀ ମାନସ ଅପ୍ରତିହତ ବିକ୍ରମରେ ଚନ୍ଦ୍ରୋତ୍ପଳା ସ୍ରୋତକୁ ଅବରୋଧ କରିବା ବାଞ୍ଛା ପୋଷଣ କରିଛି, ଚନ୍ଦ୍ରାଙ୍ଗୀ ପ୍ରଣୟିନୀର ଅଙ୍ଗ ଛୁଇଁ ବହୁଥିବା ଅବାରିତ ସ୍ରୋତକୁ ନିବିଡ଼ ଆଲିଙ୍ଗନ କରିବା ପାଇଁ । ସେଥିପାଇଁ ସେ ହୋଇଛି 'ଅଧିର ସହସ୍ରାର୍ଜ୍ଜୁନ' ପ୍ରଣୟ ଔତ୍ସୁକ୍ୟ ଉନ୍ମାଦିତ ସହସ୍ରାର୍ଜ୍ଜୁନ । ସେହିପରି ପ୍ରଣୟିନୀ ଅନୁଭବ କରିଛି ଯେ—

'କୋଟିଏ ପୁରୁରବାଙ୍କ ପୀରତି-ଆବେଗ
ଗୋଟିଏ ଚୁମ୍ବନେ ତୁମ୍ଭ ହୁଏ ଅନୁଭବ ।'

କବି ବଚ୍ଛନ୍ଦଚରଣଙ୍କ କଳ୍ପିତ ନାୟକ ମୋହନ ହେଲେ, ନାୟିକା ହୀରାମଣି ହେଉ ଅଥବା କୁନ୍ଦମାଳା ହେଉ ସେମାନେ ଯେଉଁ ପ୍ରଣୟ ନିଧିର ପ୍ରତିନିଧି ତାହା ବଚ୍ଛନ୍ଦ-ଚରଣଙ୍କ ସ୍ୱ-ଅନୁଭବଲବ୍ଧ ପ୍ରୀତି-ଅନୁଭୂତି ଭିନ୍ନ ଆଉ କିଛି ନୁହେଁ । କବିତାରେ ସେହି ପ୍ରୀତିର ଶାରସାମ୍ୟ ରକ୍ଷା କରିବା ପାଇଁ ସହସ୍ରାର୍ଜ୍ଜୁନ ଏବଂ ପୁରୁରବାମାନଙ୍କ ଆବଶ୍ୟକତା ରହିଛି । ପ୍ରେମିକାକୁ ଲକ୍ଷ କରି ପ୍ରେମିକ କହିଛି 'ତୁ ପରି ମୋର ଛଇଳା, ଜୁଲିଏଟ୍ ଶକୁନ୍ତଳା' (ପୃଷ୍ଠା ୮୯) । ଜୁଲିଏଟ୍ ରୋମିଓ ଏବଂ ଶକୁନ୍ତଳା ଓ ଦୁଷ୍ମନ୍ତଙ୍କ ପ୍ରଣୟ ସାଗରର ଗଭୀରତା ମାପିବା ପାଇଁ ବିଶ୍ୱର ଦୁଇଜଣ ମହାକବି-ନାଟ୍ୟକାର ସେକ୍ସପିୟର ଓ କାଳିଦାସ ଯେଉଁ ଉଦ୍ୟମ କରିଛନ୍ତି, ବଚ୍ଛନ୍ଦଚରଣଙ୍କ କଳ୍ପିତ ନାୟକ ସେହି ଉଦ୍ୟମର ସାହାଯ୍ୟ ନେଇ ନିଜ ପ୍ରେମର

ପରିମାପ ନିର୍ଦ୍ଧାରଣ କରିଛନ୍ତି । କିନ୍ତୁ ବଚ୍ଛନ୍ଦଚରଣଙ୍କ ନିଜ ଅଭିମତ ହେଉଛି ଯେ ଯେ କୌଣସି ବର୍ଣ୍ଣନାଠାରୁ ପ୍ରେମର ଅନୁଭୂତି ଅଧିକ ଗମ୍ଭୀର ଓ ମହାନ୍ । ପ୍ରଣୟ ଲାଗି ପ୍ରୟୋଜନ ଜୀବନ ସଂଗ୍ରାମରେ ସଂଯୁକ୍ତା-ପୃଥ୍ୱୀରାଜ, ସୁଭଦ୍ରା-ଅର୍ଜ୍ଜୁନ ହୋଇବା ପାଇଁ କବିଙ୍କ କଳ୍ପିତ ପ୍ରଣୟୀ ଓ ପ୍ରଣୟିନୀମାନେ ତତ୍ପର ହୋଇ ରହିଛନ୍ତି । 'ମାଳତୀ' ପାଖକୁ 'ବସନ୍ତ' ଚିଟାଉ ପଠାଇ ଲେଖିଛି —

“ବସନ୍ତ ମାଳତୀର ଯୋଗ ନୁହେଁ ଭଙ୍ଗୁର
କର ସଂଶୟ ମନୁ ଦୂର ।” (ପୃଷ୍ଠା ୧୬)

ଶ୍ଳେଷାର୍ଥରେ ଏଠାରେ ସୂଚୀତ ହୋଇଛି ଯେ ବସନ୍ତ ଋତୁ ଓ ପୁଷ୍ପିତା ମାଳତୀର ଯୋଗ ପ୍ରକୃତିର ଯେଉଁ ଶାଶ୍ୱତ ଅଧିନିୟମରେ ଅଧିଷ୍ଠିତ, ସେହି ଅଧିନିୟମ 'ବସନ୍ତ' ଓ 'ମାଳତୀ'ଙ୍କ ଜୀବନକୁ ମଧ୍ୟ ନିୟନ୍ତ୍ରିତ କରୁଅଛି । କେବଳ ପୃଥ୍ୱୀରାଜ-ସଂଯୁକ୍ତା କିମ୍ବା ସୁଭଦ୍ରା-ଅର୍ଜ୍ଜୁନ ନୁହେଁ, ମାଳତୀ-ବସନ୍ତର ଯୋଗକୁ ନିଜ ପ୍ରଣୟ-ଦର୍ଶନରେ ଉପଯୋଗ କରିଛନ୍ତି ବଚ୍ଛନ୍ଦଚରଣ । ବର୍ଷକୁ ବର୍ଷ ବସନ୍ତ ଆସିବ ଓ ମାଳତୀ ଫୁଟିବ, ମାଳତୀ ଫୁଟିବ ଓ ବସନ୍ତ ଆସିବ ଏହି ସହଜସୁନ୍ଦର ନିୟମର ବଶବର୍ତ୍ତୀ ହୋଇ ପ୍ରଣୟୀ-ପ୍ରଣୟିନୀ ଜୀବନ ଯାପନ କରନ୍ତୁ । ସେଥିପାଇଁ ପ୍ରଣୟୀ ତୁଣ୍ଡରେ କବି କହିଛନ୍ତି, “ଏକ ଶ୍ୱାସ ନାସାଟି ଅପରରେ ପ୍ରିୟତମା” ପ୍ରଣୟ-ପ୍ରଣୟିନୀଙ୍କ ନାସା ଦୁଇଟି ହେଲେ ହେଁ ତନ୍ମଧ୍ୟରେ ଉଭୟଙ୍କ ଏକଶ୍ୱାସ ପ୍ରବାହିତ ହେଉଅଛି । ଏକ ପ୍ରାଣ ହେଲେ ଏକ ଶ୍ୱାସ ହେବା ସ୍ୱାଭାବିକ । ଏହି ଏକ ପ୍ରାଣତାକୁ ପ୍ରକାଶ କରିବା ନିମିତ୍ତ ପ୍ରଣୟିନୀ ପ୍ରତି ପ୍ରଣୟୀର ସମ୍ବୋଧନ ହେଉଛି, 'ଅଭିନ୍ନ' । ଏହି ସମ୍ବୋଧନଟି ପ୍ରିୟା ପ୍ରତି କବିଙ୍କର ପ୍ରିୟତମ ସମ୍ବୋଧନ । କଳ୍ପିତ ନାୟକମାନେ ଯେ ତାଙ୍କ ପ୍ରିୟମାନଙ୍କୁ 'ଅଭିନ୍ନା' ବୋଲି ସମ୍ବୋଧନ କରିଛନ୍ତି, ତା ନୁହେଁ, କବି ନିଜେ ନିଜ ଆତ୍ମଜୀବନୀ ଚରିତରେ ତାଙ୍କ ପ୍ରଣୟ ପ୍ରତିମାକୁ 'ଅଭିନ୍ନା' ବୋଲି ସମ୍ବୋଧନ କରିଛନ୍ତି ।

ସମ୍ବୋଧନର ସୁଅ ଛୁଟିଛି 'ପ୍ରମଦା ପାଖକୁ ଶଶଧର' ଶୀର୍ଷକ କବିତାରେ । କଳହାସୀ, କୃପାବତୀ, କ୍ଷିତିଶୋଭା, କ୍ଷୀଣୋଦରୀ, ଗୁଣମଣି, ଘଟଣାକ୍ଷୀ, ଅନବଦ୍ୟା, ଚନ୍ଦ୍ରାନନା, ଛନ୍ନମତି, ଛଳନିଧି, ଜୀବଧନ, ଝହହାସୀ, ଟୀକାଶୋଭା, ଠଣମେଧା, ଡାକମଧା, ଢାଲେକ୍ଷଣା, ନତଦେହା, ନୀରଜାକ୍ଷୀ, ତୁଳାଅଙ୍ଗୀ, ତରଳାକ୍ଷୀ, ଧୀରସ୍ୱଭା, ରଙ୍କନିଧି, ଲୀଳାମୟୀ, ଷଣଅଙ୍ଗୀ, ଶମ୍ଭାଗୋଭା, ସାରସାକ୍ଷୀ, ରୁରୁକ୍ଷଣୀ, ଲାବଣ୍ୟ ପ୍ରତିମା, ଶୋଭାସୀମା, ଜୀବେଶ୍ୱରୀ, ପରାଣ ଦୋସର, କୁହୁକିନୀ, ପ୍ରୀତିଶୀଳା,

ବିନୋଦିନୀ, ଶୋଭା ବର୍ଦ୍ଧିନୀ ମୋର ଚେଦି ଚନ୍ଦ୍ରିକା, ଶୋଭାବତୀ, ନେତ୍ର ଦୀପାଳୀ ଆଦି ବିବିଧ ସମ୍ବୋଧନରେ କବି ପ୍ରଣୟୀଜଗତକୁ କଳାତ୍ମକତାରେ ଭରି ଦେଇ ଅଛନ୍ତି, ବୁଦ୍‌ବୁଦାୟିତ ଭାଷାର ଅସରନ୍ତି ସ୍ରୋତ ଫୁଟିଛି ।

ପ୍ରଣୟିନୀକୁ ସମ୍ବୋଧନ କରି ପ୍ରଣୟୀ କହୁଛି, ତୁ ମୋ ଜୀବନର ଆଲୋକ (ପୃଷ୍ଠା ୧୧୬) ତୁ ମୋ ଧନ ଚନ୍ଦ୍ରା, ଗୃହ ସପନ ଓ ମୋ ନାସାର ନିଃଶ୍ୱାସ ପବନ । ପୁଣି କହୁଛି,

"ଶୀତ ସକାଳର କଅଁଳ ଖରା ନିଦାଘ ଶୀତଳ ବାତ
ଜୀବନ ପୀଠାକୁ ମିଠାରୁ ଶୋଭାଙ୍ଗି ! ବରଷାପାତକୁ ଗ୍ଲାତ ।"
... ...
ପ୍ରାଣ କ୍ଷୁଧାକୁ ଭୁରି ଭୋଜନ । (ପୃଷ୍ଠା ୭୧)

କବି ବିଚ୍ଛନ୍ଦଚରଣଙ୍କର ଏହି ସମ୍ବୋଧନଗୁଡ଼ିକ ଯେଉଁ ଚିତ୍ରକଳ୍ପମାନ ବହନ କରୁଛି, ତାହା ମଧ୍ୟରୁ ଅନେକ ତାଙ୍କ ନିଜସ୍ୱ ଓ ଅଭ୍ର କେତେକ ସମୃଦ୍ଧ ଇଂରାଜୀ ସାହିତ୍ୟରୁ ଆହରିତ ।

ପ୍ରଣୟୀ ରୂପରେ ପ୍ରଣୟିନୀକୁ 'ରୂପିଣୀ କବିତା' ବୋଲି କୁହାଇଛନ୍ତି ବିଚ୍ଛନ୍ଦଚରଣ (ପୃଷ୍ଠା ୩୯) । ପ୍ରିୟା ହେଉଛି ମୂର୍ତ୍ତିମତୀ କବିତା । ତାହାର ମନୋଜ୍ଞ ଛବି, ଶୋଭାବିଳାସୀ କିଶୋର କବି ଲେଖନୀର ଚିରନ୍ତନ ଆହାର (ପୃଷ୍ଠା ୪୬) । ପ୍ରିୟାର ଶୋଭା ବର୍ଣ୍ଣନା କରି କବି କହିଛନ୍ତି,

"କପାଳ ଝଲକିଲେ ମୁକୁର ପରି
ମୁଖ ଦେଖିବ ତହିଁ କବିତା ନାରୀ ।" (ପୃଷ୍ଠା ୪୬)

ସେ ହେଉଛି କବିମୋହିନୀ । ସେ କବିତାର ଉତ୍ସ । ତାହାର ଅଙ୍ଗେ ଅଙ୍ଗେ କବିତାର ଅସରନ୍ତି ଫୁଆରି । ତାହାର ମଗ୍ନଳଗଢ, 'କବି-କବିତା ଲାଗି ଅତୁଳ ଭୂତ (ପୃଷ୍ଠା ୪୩) । କବି କହନ୍ତି—

'ଭାବରାଜ୍ୟ ଭାଷାର ତୁ ଯୋଗ୍ୟ ବାଗୀଶ୍ୱରୀ'
ଭାବ କାବ୍ୟ ବିଦଗ୍ଧ କଲୁ ଚିତ୍ତ ମୋର ।

କିନ୍ତୁ କବି ବିଚ୍ଛନ୍ଦଚରଣଙ୍କ ପାଇଁ ଉଦ୍ଧୃତ କବିତା ପ୍ରଣୟ-ପ୍ରକାଶର ଯଥେଷ୍ଟ ବାହନ ହୋଇ ନଥିଲା । 'ରତ୍ନମାଳା ପାଖକୁ ମାଧବ' ଶୀର୍ଷକ କବିତାରେ ପ୍ରଣୟୀ ମାଧବ କଣ୍ଠରେ କବି କହିଛନ୍ତି,

'ରତନା ! ପୋଥିଏ କଥା ରୁ ଲୁହରେ,
କହିଗଲୁ ମୋର କଣ୍ଠ ନ ଫିଟିଲା
ଜଡୀଭୂତ ହୋଇ କୋହରେ ।"

ପରବର୍ତ୍ତୀ ପଦରେ କବି ଏହି ଘଟଣାର ତାତ୍ପର୍ଯ୍ୟ ସୂଚାଇ କହିଛନ୍ତି,

"ଲୁହ କୋହ ଯେତେ କଥା କହନ୍ତିରେ ରସନା ନ ପାରେ ବଖାଣି
ଅନୁଭବରୁ ହେବନୁଁ ଥାଇ ଜାଣି ଆହାରେ ମୋର ହୃଦମଣି ।
"ରତନା ! ଓଠରେ ବନାଇ ଚୂନାଇ
ଯେତେ ଯା ଲେଖିଲେ ଲୁହକୋହ ।ପରି
କଥାକି ତହିଁରେ ଫିଟଇ ?"

'ଲୁହ କୋହ'ର ପତେ କି ପ୍ରକାଶିକା ଶକ୍ତି ! ପୋଥିଏ କଥାକୁ ଲୁହରେ କହି ହୁଏ, କିନ୍ତୁ ପୋଥି କଥାରେ ବିନ୍ଦୁଏ ଲୁହକୁ କହି ହୁଏନାହିଁ । ଏହା ଅନୁଭବ ସମ୍ବେଦ୍ୟ ବୋଲି କବି ସୂଚାଇ ଦେଇ ଅଛନ୍ତି । ଲୁହ କୋହକୁ 'ଅବାକ ପ୍ରଗଲ୍‌ଭତା' ଆଖ୍ୟା ଦିଆଯାଇପାରେ । ପ୍ରଣୟ ରାଜ୍ୟରେ ଏହି ଅବାକ୍ ପ୍ରଗଲ୍‌ଭତାର ପ୍ରାଧାନ୍ୟ ସୂଚାଇ କବି ଲେଖିଛନ୍ତି :—

"ଆରେ ବାନ୍ଧବ !
ଅବାକ୍ ପ୍ରୀତି ସମ୍ଭାଷଣ
ସବାକ୍ ପ୍ରୀତି-ସମ୍ଭାଷୁ ପିନା ବଡ଼
ଅନୁଭବୁଁ ବୁଝିଲି ମନ ।" (ପୃଷ୍ଠା ୪୬)

କବି ନିଜ ଅନୁଭବରୁ ବୁଝିଥିଲେ ଯେ ପ୍ରଣୟ ଜଗତରେ ମୂକ ବାବଦୂକ ହେବା ସ୍ୱାଭାବିକ ସତ୍ୟ, କିନ୍ତୁ ବାବଦୂକ ମୂକ ହେବା ଆଦୌ ଅସ୍ୱାଭାବିକ ନୁହେଁ । ନିଜ ଜୀବନରେ ଦୀର୍ଘ ଏକବର୍ଷ କାଳ ନିମଗ୍ନ-ଚେତନାରେ ମୂକ ହୋଇ ବସିବା ତାଙ୍କ ଭାଗ୍ୟରେ ଘଟିଥିଲା । ତହିଁରୁ ସେ ସ୍ୱ-ଅନୁଭବରେ ବୋଧ କରିଥିଲେ ଯେ ସବାକ-ସମ୍ଭାଷଣ ଠାରୁ ଅବାକ-ସମ୍ଭାଷଣ ଅନେକ ଗଭୀର ଓ ଅଧିକ ମହନୀୟ । ଯେଉଁ ଅନୁଭବ ଭାଷାର ଅତୀତ, ତାହାର ପରିଚୟ ପାଇବା ପାଇଁ ପ୍ରଣୟକୁ ଏକ ସାଧନ ରୂପେ ଗ୍ରହଣ କରାଯାଇ ପାରେ । ପ୍ରଣୟରୁ ସଂଜାତ ଉଦ୍‌ବେଳିତ ଭାଷା ଓ ସେହି ଉଦ୍‌ବେଳିତ ଭାଷାର ଅନ୍ତରାଳ ଗାଢ଼ ମୌନଭାବ କବି ନିଜ ଅନୁଭବରେ ଲକ୍ଷିଛନ୍ତି । ତାଙ୍କର ବାକ୍ ମୁଖର କବିତାର ସ୍ତରେ ସ୍ତରେ ନିର୍ବାକ ପ୍ରୀତି ଗାଢର ବିବିଧ ଚିହ୍ନ ଫୁଟି ଉଠିଛି । ବାକ୍ ସହିତ କବି ଯେତିକି ପରିଚିତ ଥିଲେ, ନିର୍ବାକ ସହିତ ସେତିକି ପରିଚିତ ଥିଲେ ।

ବାକ୍ ଓ ନବାକ୍ ଉଭୟ ସଂସାରରେ କବିଙ୍କ ଜୀବନ ତଥା କବିତା ସଞ୍ଚରଣ କରି ଯାଇଛି ।

ବିଚ୍ଛନ୍ଦଚରଣଙ୍କ କବିତାରେ ବାକ୍ ଓ ନବାକ୍ ପରି ଆଉ ଗୋଟିଏ ଦିଗ ସ୍ପଷ୍ଟ ବାରି ହୁଏ, ତାହା ହେଉଛି, ବାସ୍ତବତା ଓ କଳ୍ପନା । 'ଭାବନୀ ଭାବନା' ଗ୍ରନ୍ଥର ପ୍ରାକ୍‌କଥନରେ କବି ବିଚ୍ଛନ୍ଦଚରଣ ଯାହା କହିଛନ୍ତି ତାହା ଗଭୀର ପ୍ରଣିଧାନର ବିଷୟ । ସେ ଲେଖିଛନ୍ତି, "ଯୁବକ-ଯୁବତୀଙ୍କ ପ୍ରେମାନୁଭୂତି ଅତଳସ୍ପର୍ଶୀ । ପ୍ରତିଭା ଯେତେ ପ୍ରଖର ହେଉ, ଲେଖନୀ ଯେତେ ମୁଖର ହେଉ ପଛକେ ତାର ପୂର୍ଣ୍ଣ ପ୍ରକଟନ କରିବା କବି ପକ୍ଷରେ ଅସମ୍ଭବ ।" କେବଳ କୌଣସି ଜଣେ କବିଙ୍କ କଥା ଏଠି ଉଠୁନାହିଁ; ବିଚ୍ଛନ୍ଦଚରଣ କହନ୍ତି, ଅଦ୍ୟାବଧି ବିଶ୍ୱର ସମସ୍ତ ସମର୍ଥ କବିମାନଙ୍କ ମିଳିତ ପ୍ରଚେଷ୍ଟା ମଧ୍ୟ ସେଥିପାଇଁ ଅକୁଳାନ ହୋଇଛି । ପ୍ରେମାନୁଭୂତିକୁ ନିଃଶେଷ ରୂପେ ପ୍ରକଟ କରିବାର କ୍ଷମତା ପ୍ରେମ କବିତାର ନାହିଁ । ସେ ଲେଖିଛନ୍ତି, "ଦେଶେ ଦେଶେ ଓ ଯୁଗେ ଯୁଗେ ଯେତେ ଯେତେ ପ୍ରେମ କବିତା ପ୍ରଣୀତ ହୋଇଅଛି ତାହା ଏକତ୍ର କରିଗଲେ ମଧ୍ୟ ପ୍ରେମିକ ପ୍ରେମିକାମାନେ ବାସ୍ତବରେ ଯାହା ଅନୁଭବ କରନ୍ତି ତାହା ତହିଁର ସୀମାସ୍ପର୍ଶ ମାତ୍ର କରିପାରେ ।" ଅନୁଭବର ବହିରଙ୍ଗ-ସୀମା ସ୍ପର୍ଶ କରି କବିତା ନିରସ୍ତ ହୋଇଯାଏ । ଏହି ବହିରଙ୍ଗ ସୀମାଯାଏ ପହଞ୍ଚାଇବା ଲାଗି ବିଶ୍ୱର ଯୁଗ ଯୁଗ ସଞ୍ଚିତ ଯାବତୀୟ କବିତା ଓ କବିପ୍ରତିଭା ଉଦ୍ୟମ କରି ଆସିଛି । କବିତାଠାରୁ ଅନୁଭୂତି ଅଧିକ ଗଭୀର ଓ ମହୀୟାନ୍ । ପ୍ରେମିକ ପ୍ରେମିକାଙ୍କ ଏହି ଅତଳ ରସାନୁଭବର ବର୍ଣ୍ଣନା ପାଇଁ ବିଚ୍ଛନ୍ଦଚରଣ ଯେଉଁ ପ୍ରଚେଷ୍ଟା କରି ଅଛନ୍ତି ତାହା 'ଅତ୍ୟନ୍ତ ଆନ୍ତରିକ' ବୋଲି ସେ ନିଜ ପକ୍ଷରୁ ବିନୟ ଓ ଦୃଢ଼ତା ସହିତ ପ୍ରକାଶ କରିଅଛନ୍ତି । କେବଳ ଭାବନୀଭାବନା ନୁହେଁ, ବିଚ୍ଛନ୍ଦଚରଣଙ୍କ ସାରସ୍ୱତ ସୃଷ୍ଟି ହେଉଛି ଏକ 'ଅତ୍ୟନ୍ତ ଆନ୍ତରିକ' ସୃଷ୍ଟି, ଆନ୍ତରିକତା ହେଉଛି ସେ ସୃଷ୍ଟିର ମୂଳସ୍ୱର । ବିଚ୍ଛନ୍ଦଚରଣଙ୍କ ଜୀବନ ଓ କବିତାର ପ୍ରଥମ ମୂଲ୍ୟବୋଧ ହେଉଛି ଆନ୍ତରିକତା ବା ଅକୈତବତା । ବିଚ୍ଛନ୍ଦଚରଣ ନିଜ ଜୀବନରେ ଅନାନ୍ତରିକତା ବା କୈତବତାର ଘୋର ଶତ୍ରୁ ଥିଲେ । ଆନ୍ତରିକତାର ଏକ ଅପୂର୍ବ ସମ୍ମୋହନ ଯେ ତାଙ୍କ କବିତା ଜଗତକୁ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରି ରହିଛି, ତାହା ଯେ କୌଣସି ପାଠକ ସହଜରେ ଉପଲବ୍ଧି କରିପାରିବେ । ସେ ପୁଣି କହିଛନ୍ତି, "ନିଜ ଜୀବନର ବାସ୍ତବ ଅନୁଭୂତି ବହୁସ୍ଥଳରେ ବର୍ଣ୍ଣନାକୁ ସମଧିକ ରସମୟ କରିବାରେ ସାହାଯ୍ୟ କରିଥିବ । ମୋର କବିବୃତ୍ତି କେତେ ପରିମାଣରେ ବାସ୍ତବକୁ ଓ କେତେ ପରିମାଣରେ କଳ୍ପନାକୁ ଯେ କି ଏ ରଚନାକୁ ସାର୍ଥକ କରିଅଛି ତାହା ବିଶ୍ଳେଷଣର ଅତୀତ ।" ବିଚ୍ଛନ୍ଦଚରଣ କହନ୍ତି, "କବି ମାନବସମାଜର

ଯାବତୀୟ ସୁକୁମାର ଅନୁଭୂତିର ଭାବସର୍ବସ୍ୱ ପ୍ରତିନିଧି ।" ମାନବସମାଜ ଯେଉଁ ସୁକୁମାର ଅନୁଭୂତି ମାନ ଲାଭ କରି ଧନ୍ୟ ହୋଇଛି, ମର୍ତ୍ତ୍ୟଲୋକରେ ଥାଇ ମଧ୍ୟ ଅମର୍ତ୍ତ୍ୟ-ବିଭୂତିର ସନ୍ଧାନ ପାଇଛି, ସେହି ଅମୃତମୟ ଅନୁଭୂତିମାନଙ୍କ ପ୍ରତି ମାନବସମାଜକୁ ସଚେତନ କରାଇଦେବା ହେଉଛି କବିର କର୍ତ୍ତବ୍ୟ । ଖଣି ଖୋଳି ରତ୍ନ ଆହରଣ କଲାପରି ମାନବଜୀବନ ଭୂମିରୁ ଏହି ସୁକୁମାର ଅନୁଭୂତିମାନଙ୍କୁ ସଂଗ୍ରହ କରି ତାହିଁରେ ଭାରତୀଙ୍କ ପାଇଁ କଣ୍ଠହାର ପ୍ରସ୍ତୁତ କରିବା ହେଉଛି କବିର କର୍ମ । ଭାରତୀଙ୍କୁ ନିବେଦିତ ସେହି ଅମୂଲ୍ୟ କଣ୍ଠହାର ପ୍ରସାଦରୂପେ ନିଖିଳ ମାନବଜାତିର କଣ୍ଠ ମଣ୍ଡନ କରିଥାଏ । ଏହି କାର୍ଯ୍ୟ ସମାଧାନ କରିବା ପାଇଁ କବି ହାତରେ ଯେଉଁ ଦୁଇଟି ଉପାଦାନ ଉପଲବ୍ଧ ହୋଇଥାଏ, ତାହା ହେଉଛି ବାସ୍ତବ ଅନୁଭୂତି ଓ କବିମାନସ କଳ୍ପନା । ସଚ୍ଚିଦାନନ୍ଦ ଲେଖନ୍ତି, "କବିମାନେ କଳ୍ପଲୋକର ଅଧିବାସୀ । ସେମାନଙ୍କ ଠାରେ ଅନୁଭୂତିର ସୌକୁମାର୍ଯ୍ୟ ଓ କଳ୍ପନାର ଯାଦୁ ପୂର୍ଣ୍ଣ ଅଙ୍ଗାଙ୍ଗୀ ଭାବରେ ଉପଲବ୍ଧ ହୋଇଥାଏ । ତେଣୁ ଅନୁଭୂତିରୁ କଳ୍ପନାକୁ ବ୍ୟବଚ୍ଛେଦ କରିବା ସେଠାରେ ସମ୍ଭବ ହୁଏନାହିଁ । ତେଣୁ କବିଜଗତର ରସ-ସୃଷ୍ଟିରେ ବାସ୍ତବ ଓ କଳ୍ପନାର 'ହରିଣ୍ଣ-ଭରଣ-ବହୁଭଙ୍ଗିତ-ସମାବେଶ' ଘଟିଥାଏ । ତଥାପି ସଚ୍ଚିଦାନନ୍ଦଙ୍କ ପତ୍ର-ନାୟିକା ମାଧୁରୀ ତାହାର ପ୍ରେମିକ ରାଜକିଶୋର ପାଖକୁ ଲେଖିଛି—

'ନିର କଳ୍ପନା ନୋହୁଥିଲେ ଚୂନା
ଏ ଧରା ଅମରାବତୀ ହେ
କ୍ଷଣକେ ହୁଅନ୍ତା କେ କମ୍ପା ସହନ୍ତା
କନ୍ଦର୍ପ-ଜର ଡବଡ ହେ
ବାସ୍ତବକୁ ଆସ ଫେରି
ରାଣ ପକାଏ ତୁମ୍ଭ ମାଧୁରୀ ହେ ।'

କଳ୍ପନାର କଳ୍ପଲୋକରୁ ଓହ୍ଲାଇ ଆସ, 'ବାସ୍ତବତାକୁ ଫେରି ଆସ', ମାଧୁରୀ ରାଣ ପକାଇ କହୁଛି । ଏ ଧରା ଅମରାବତୀ ନୁହେଁ । ତେଣୁ ଏଠାରେ ନିର କଳ୍ପନା ସବୁ ଚୂନା ହୋଇ ଯିବାର ପ୍ରଚୁର ସମ୍ଭାବନା ରହିଛି ।

'କଳ୍ପନା-ମଞ୍ଜିରୂହ ବାସ୍ତବ-ଅଶନି
ଜାଳିଦେବ ବନ୍ଧୁ ଆରେ ! ଥିଲି ନାହିଁ ଜାଣି ।'

(ଚିତ୍ରତାଳ୍କୁ ମୂଦ, ପୃଷ୍ଠା ୬)

ବଚ୍ଛନ୍ଦଚରଣଙ୍କ ଜୀବନର ନୀତି ବା ଆଦର୍ଶାନୁଭୂତି ଏହି ପଂକ୍ତିମାନଙ୍କରେ ମୂର୍ତ୍ତିମନ୍ତ ହୋଇଅଛି ।

'କବିତା କୁମୁଦ' ଗ୍ରନ୍ଥର ଦୁଇଟି ବିଶିଷ୍ଟ ପ୍ରେମ କବିତା 'ଆଦ୍ୟ ଭେଟେ' ଓ 'ଲୋଚକାଭିଷେକ'ରେ କବି ତାଙ୍କ ଉତ୍କଣ୍ଠିତ ପ୍ରେମାନୁଭୂତିକୁ ରୂପ ଦେଇ ଯାଇଛନ୍ତି । ପାଦଟୀକାରେ କବି କହିଛନ୍ତି ଯେ 'ଲୋଚକାଭିଷେକ' ହେଉଛି ଇଂରାଜୀ କବି ଲର୍ଡ଼ ବାଇରନଙ୍କ 'ଏଲେଜି ଅନ୍ ଥାୟ୍ରାଜ୍ଞୀ' କବିତାର ଓଡ଼ିଆ ଅନୁକରଣ । କବି ବାଇରନ ଓ ବଚ୍ଛନ୍ଦଚରଣ ଉଭୟଙ୍କ ହୃଦୟର ଉଦ୍ବେଳ ଉତ୍ତପ୍ତ ଅନୁଭୂତି ସାବଲୀଳ ଭାବରେ ଏହି କବିତାଟିରେ ଆତ୍ମପ୍ରକାଶ କରିଛି । ବାଇରନଙ୍କୁ ବଚ୍ଛନ୍ଦଚରଣ ନିଜର ସମଧର୍ମୀ କବି-ମିତ୍ର ବୋଲି ଆଦରରେ ଉଲ୍ଲେଖ କରୁଥିଲେ । 'ଭାବିନୀ ଭାବନା' ଗ୍ରନ୍ଥରେ ପ୍ରେମିକ ତାହାର ପ୍ରେମିକାକୁ ପତ୍ରରେ ଲେଖିଛି—

'ଚନ୍ଦ୍ରେ ତୁ ଦସ୍ୟାବଦ୍ଧ ଅଙ୍ଗନା ! ଅଙ୍ଗ ହୁଅ  
ତୋର ମୁଁ ହୋଇବଇଁ ଗ୍ରହରେ  
ତାଳାମଣି ।

ମୋରେ ତୁ ନ ବୁଝା ଧରମ  
ପ୍ରେମ ମୋ ଧରମ ପରମ ।' (ପୃଷ୍ଠା ୯ )

ପ୍ରେମକୁ ଜୀବନର ପରମ ଧର୍ମ ବୋଲି ଉଦ୍‌ଘୋଷଣା କରି ବଚ୍ଛନ୍ଦଚରଣ ତାଙ୍କ ଜୀବନ-ଦର୍ଶନର ଏକ ଅମୂଲ୍ୟ ସ୍ୱର୍ଣ୍ଣ-କୁଞ୍ଚି ଆମ ହାତକୁ ଦେଇଯାଇଛନ୍ତି । କେବଳ ପ୍ରଣୟାରୂଢ଼ ପ୍ରେମ ନୁହେଁ, ଦେଶ-ପ୍ରେମ ଓ ଭଗବତ୍-ପ୍ରେମର ଅବାରିତ ପ୍ରବାହ ବଚ୍ଛନ୍ଦଚରଣଙ୍କ ନିଜ ଜୀବନ ଓ କବିତାକୁ ଆପ୍ଲୁତ କରିଅଛି । ଏକନିଷ୍ଠ ଆନ୍ତରିକତା ହେଉଛି ସେ ପ୍ରେମର ମୂଳସୂତ୍ର ଓ ସମର୍ପିତ ତଲ୍ଲୀନତା ହେଉଛି ସେ ପ୍ରେମର ମୂଳଧାରା ।

ବଚ୍ଛନ୍ଦଚରଣଙ୍କ ଦେଶ-ପ୍ରୀତିମୂଳକ କବିତାମାନଙ୍କରେ ତାଙ୍କ ଦେଶ-ପ୍ରେମର ଉଜ୍ଜ୍ୱଳ ଚିତ୍ର ପ୍ରସ୍ଫୁଟିତ ହୋଇଅଛି । ତାଙ୍କ ପାଇଁ ଦେଶ ଥିଲା ଦେଶ-ମାତୃକା; ନିଜର ଓ ଦେଶବାସୀଙ୍କ ଜନନୀ । ସେ ତାଙ୍କ ଜନ୍ମଭୂମିକୁ 'ମାଆ' ବୋଲି ସମ୍ବୋଧନ କରୁଥିଲେ । କବିତା କୁମୁଦ ପ୍ରଥମଭାଗ ପ୍ରଥମ କବିତାଟି ହେଉଛି 'ମାଆ' ଓ ତାହାର ପର ଗୀତଟି ହେଉଛି 'ଆଦ୍ୟଭେଟେ' । କବିତା କୁମୁଦର ଦ୍ୱିତୀୟ ଭାଗର ପ୍ରଥମ କବିତାଟି ମଧ୍ୟ ଦେଶାତ୍ମବୋଧ କବିତା ଓ ତା'ର ପର କବିତାଟି

ପ୍ରେମ କବିତା । କବିଙ୍କ କୃତ୍ତିତ୍ୱ ସଂକଳନ କଲାବେଳକୁ ସମସ୍ତ ଅପେକ୍ଷା ଦେଶ-ପ୍ରୀତି କବିଙ୍କୁ ଅଧିକ ଆକୃଷ୍ଟ କରିଛି ।

ଓଡ଼ିଶା ଭୂଇଁକୁ 'ସାଢ଼େ କୋଟି ସନ୍ତାନ-ପାଳିନୀ ମା' ବୋଲି ସେ ସମ୍ବୋଧନ କରି ଅଛନ୍ତି । ଦେଢ଼ କୋଟି ସନ୍ତାନର ବୈଭବଶାଳିନୀ ମା ହେଉଛି,

'ତଟିନୀ-ମେଖଳା ପୋତ-ପ୍ରୁତ-ବେଳା
ନଇଷ୍ଟସ୍ମୃଦ୍ଧି-ମନ୍ଦିର-ମାଳିନୀ ମା ।'

ସେ 'ନଇଷ୍ଟସ୍ମୃଦ୍ଧି-ମନ୍ଦିର-ମାଳିନୀ', ମୋକ୍ଷ-ପାଦପଦ୍ମମାଳ-ଶୋଭିନୀ', 'ଶ୍ରୀଜସ୍ୱ-ଶ୍ରୀମୟୀ ହ୍ଲାଦିନୀ' ଓ ବଚ୍ଛନ୍ଦଚରଣଙ୍କ 'ଶ୍ରେଷ୍ଠ-କୃମୁଦାନନ୍ଦ-ସ୍ୱନ୍ଦନୀ ମା' । ବଚ୍ଛନ୍ଦଚରଣ ନିଜ ସ୍ୱଦେଶକୁ, ଜନ୍ମଭୂମିକୁ ପ୍ରାଣଭରି ଭଲ ପାଉଥିଲେ । ନିଜ ଜୀବନର ପ୍ରତିଟି ମୁହୂର୍ତ୍ତକୁ ସେ ଦେଶର ସାଂସ୍କୃତିକ ଜାଗରଣ ଓ ସୁରକ୍ଷା ପାଇଁ ଉତ୍ସର୍ଗ କରିଯାଇ ଅଛନ୍ତି । ତାଙ୍କ ସ୍ୱରରେ ଜଣେ ଏକାନ୍ତ ଦେଶଭକ୍ତ ବୀର ପୁରୁଷର ସ୍ୱର ନିନାଦିତ ହେଉଥିଲା । ସେ ଗର୍ବର ସହିତ ଅନୁଭବ କରୁଥିଲେ,

'ସେ ତ ସ୍ୱଦେଶ ମୋହର
ଧରଣୀର ମଥାମଣି ଗୌରବର ଘର ।' (ପୃଷ୍ଠା ୧୮୭)

ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଉତ୍କଳ ଭୂଖଣ୍ଡକୁ ଲକ୍ଷ୍ୟକରି କବି ଗାଇଛନ୍ତି,

'ମହୁଖାଇ ଫୁଲେ ଯାଉ ଘୁମାଏ ଭ୍ରମର
ସେହି ସ୍ୱଦେଶ ମୋହର ।' (ପୃଷ୍ଠା ୧୮୮)

ସେହି 'ସ୍ୱଦେଶର ମାଟି ମୋର ପୂଜାର ଚନ୍ଦନ' ଓ ତାହାର ଧୂଳି ମୋ ପାଇଁ 'ଯଜ୍ଞ ବିଭୂତି' । ସେହି ଦେଶରେ ଜନ୍ମ ହୋଇ ତାଙ୍କ ଜୀବନ ଧନ୍ୟ ହୋଇଛି । (ପୃଷ୍ଠା ୧୮୯) । ବଚ୍ଛନ୍ଦଚରଣ ଓଡ଼ିଶାର ଜଣେ ଅଧିବାସୀ ବୋଲି, ଓଡ଼ିଆ ବୋଲି ନିଜକୁ ଧନ୍ୟ ମନେ କରୁଥିଲେ । ଓଡ଼ିଆ ମାନଙ୍କେ ଏହି ସ୍ୱାଭିମାନର ଅଧିକାରୀ ହୁଅନ୍ତୁ । ତାହା ସେ ପୂର୍ଣ୍ଣପ୍ରାଣରେ କାମନା କରୁଥିଲେ ।

ବଚ୍ଛନ୍ଦଚରଣ ଜାତୀୟ ସ୍ୱାଭିମାନର ବଶବର୍ତ୍ତୀ ହୋଇ ପଚାରିଛନ୍ତି,

''କେଉଁ ଭୂମି କହ ଭଲ ତୋହ ସମା
ଗୋ ଶସ୍ୟ-ଶ୍ୟାମା ।'' (ପୃଷ୍ଠା ୪୨)

ତାଙ୍କ ଜନ୍ମଭୂମିକୁ ସେ 'କୀର୍ତ୍ତିଧାମା', 'ତ୍ରିଦଶକାମ୍ୟା', 'କଳାଲକ୍ଷ୍ମୀ-ମନୋରମା' 'ଅଖିଳ-ବଣିଜ-ରମା' ବୋଲି ସମ୍ବୋଧନ କରିଅଛନ୍ତି । ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମ ଦେବଙ୍କ ଭଳି ବୀରପୁରୁଷମାନଙ୍କ ପୌରୁଷ, କେଶରୀବଂଶ, ଅନଙ୍ଗଭୀମଦେବ ଓ ଲାଙ୍ଗୁଳା ନରସିଂହ ଦେବଙ୍କ ପୁଣ୍ୟ କୀର୍ତ୍ତି, ଭକ୍ତକବି ରାଧା-ଗୋପାଳକୃଷ୍ଣ-ରାଧାନାଥଙ୍କ ଅମର କଳାସାଧନା, ପୁରୁଷସିଂହ ମଧୁସୂଦନ ଦାସ ଓ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କ ଅଟଳ ଦେଶପ୍ରାଣତା ବିଚ୍ଛନ୍ଦଚରଣଙ୍କୁ ତାଳ ତାଳକୁ ବିଭୋର କରି ରଖିଥିଲା ବୋଲି 'ସ୍ୱଦେଶ' ଶୀର୍ଷକ କବିତାରେ ସେ ଲିପିବଦ୍ଧ କରିଅଛନ୍ତି । (ପୃଷ୍ଠା ୧୦୧-୧୦୪) । କଳିଙ୍ଗର ବିପୁଳ ଗଜବାହିନୀ, ବିଶାଳ ନୌବାହିନୀ କଥା ସ୍ମରଣ କରି ବିଚ୍ଛନ୍ଦଚରଣଙ୍କ ଛାତି ଫୁଲି ଉଠୁଥିଲା । ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଲବ୍‌ଧ ବିଦେଶାଗତ ଧନ ଯେ ଆମ ଜାତୀୟ-ସମୃଦ୍ଧିର ହେତୁ, ଏହା କଦାପି ବିସ୍ମରଣ ନହେବା ପାଇଁ ବିଚ୍ଛନ୍ଦଚରଣ ଚେତାବନୀ ଦେଇ ଅଛନ୍ତି । ଓଡ଼ିଶାକୁ ସେ 'ପୋତପୂର୍ଣ୍ଣ ବେଳା' 'ଋଦ୍ଧିମନ୍ତ ବେଳା ଧନ୍ୟା' ବୋଲି କହିଛନ୍ତି । ସାମୁଦ୍ରିକ ବାଣିଜ୍ୟ କ୍ଷେତ୍ରରେ ଓଡ଼ିଆ ସାଧବପୁଅ-ମାନଙ୍କ ସାହସିକ ପଦକ୍ଷେପ ଓ ତା'ଫଳରେ ପାଣିସୁଅସମ ବିଦେଶାଗତ ଧନର ଆଗମନ ଜାତୀୟ ପ୍ରାଣସ୍ପନ୍ଦନକୁ ବଳିଷ୍ଠ କରୁଥିଲା । ବିଚ୍ଛନ୍ଦଚରଣ ବୁଝିଥିଲେ ଯେ ଅର୍ଥନୈତିକ ଭିତ୍ତିଭୂମି ଉପରେ ଜାତୀୟ ସଂସ୍କୃତିର ସୌଧ ନିର୍ମିତ ହୋଇଛି । ଯେଉଁ ପରିମାଣରେ ଜାତି ଦରିଦ୍ର ହୋଇଯିବ, ସେହି ପରିମାଣରେ ତାହାର ସାଂସ୍କୃତିକ ମେରୁଦଣ୍ଡ ଦୋହଲିଯିବ । ଓଡ଼ିଆ ଜାତିର ମେରୁଦଣ୍ଡ ଆଜି ଦୋହଲି ଯାଇଛି ସେହି କାରଣରୁ । ବିଚ୍ଛନ୍ଦଚରଣ ଉଦ୍‌ବେଗ ପ୍ରକାଶ କରି କହିଛନ୍ତି,

'ବାଣିଜ୍ୟ ଲକ୍ଷ୍ମୀ ଯାଇଁ  ପର ହାତେ ସମ୍ଭାଇ
ସେ ଭୂତିବିନା ଜାତି ଜୀଇ କି ହେ ।' (ପୃଷ୍ଠା ୨୦୭)

ଆଜି ବାଣିଜ୍ୟ-ଲକ୍ଷ୍ମୀ ପରହସ୍ତଗତା ହୋଇଛନ୍ତି । ଜାତୀୟ ଜୀବନ ଖର୍ବ ଓ ଅଥର୍ବ ହୋଇ ଆସୁଛି । ଜାତୀୟ ଜୀବନ-ଦୀପ ମିଞ୍ଜି ମିଞ୍ଜି ହୋଇ ଜଳୁଛି । ବିଚ୍ଛନ୍ଦଚରଣ ଉଦ୍‌ବିଗ୍ନଚିତ୍ତର ସହିତ ଦେଶବାସୀଙ୍କୁ ପଚାରିଛନ୍ତି, 'ତୁମ୍ଭମାନଙ୍କ ରକ୍ତରୁ ଉଷ୍ମା ଗଲା କୁଆଡ଼େ ?' ସାଧବ କୁଳର ଉତ୍ତର ଦାୟାଦ ହୋଇ 'ଦୀନତା ଶେଯରେ ଶୋଇ ହାଇ ମାରି କଅଣ ତୁମକୁ ଶୋଭା ଦିଶୁଛି ?' ଆଉ 'ନିଜ ଛାଇକୁ ଗୃହିଁ ଚମକିବା' କଅଣ 'କଳିଙ୍ଗ-ପୌରୁଷ'ର ଲକ୍ଷଣ ?

''ବିଚ୍ଛନ୍ଦ ଜାତି କହେ  ଶୋକ ଅନଳ-ଦାହେ
ବୁକୁ ପୋଡ଼େ ଗୃହିଁଏ ମଲ୍ଲୀକ ହେ ।' (ତନ୍ନୈବ)

ଓଡ଼ିଆ ଜାତିର ଦୁର୍ଦ୍ଦିନ ଓ ଦୁର୍ଦ୍ଦଶାରେ ବ୍ୟସ୍ତ ବିବ୍ରତ ବଛନ୍ଦଚରଣଙ୍କ ହୃଦୟର ଉଚ୍ଛ୍ୱାସ ଲିପିବଦ୍ଧ ହୋଇଛି ତାଙ୍କ ରଚିତ କଳହଂସ କେଦାର ଗୀତରେ । ଏହି ଚଉତିଶା ବଛନ୍ଦଚରଣଙ୍କର ଏକ ସାର୍ଥକ ରଚନା । ତହିଁରେ ସେ ଓଡ଼ିଶାରେ ଚିର ଦୁର୍ଭିକ୍ଷ, ଜଳପ୍ଲାବନ୍ୟା, ଓ ଦାରିଦ୍ର୍ୟ କଶାଘାତ ପୀଡ଼ିତ ନୀରବ ନିରୁପାୟ ପରିସ୍ଥିତିର ବର୍ଣ୍ଣନା କରି ଭାଗ୍ୟ ସହିତ ସଂଗ୍ରାମ କରିବା ପାଇଁ ଆହ୍ୱାନ ଦେଇଛନ୍ତି ।

'ଡାକ କହୁଛି ମାତ ! ଉଠ ଏଥର
ଡିଙ୍ଗର ଭାଗ୍ୟଦର୍ପ କରିବା ଚୂର'' (ପୃଷ୍ଠା ୧୧୪)

ନିଜ ହାତରେ ଭାଗ୍ୟଲିପିକୁ ପୋଛିଦେବା ପାଇଁ ସେ ଓଡ଼ିଶାଭୂମିକୁ କହୁଛନ୍ତି,

''ନ ପୁଣ ଏହୁ ଦଶା ହୁଅଇ ଚିର
ନିସ୍ତବ୍ଧ ଶିରେ ନୃତ୍ୟ ରଚ ମା ! ଘୋର
ନିସ୍ୱନୀ ନିସ୍ୱରର ହୁଅ ଜନନୀ !
ନ ଦେଖିଲି ଯା ନେତ୍ର ଖିଲ ଅବନୀ !''

ନିସ୍ୱରର ନିସ୍ୱନୀ ହେବା ପାଇଁ ଓଡ଼ିଶାଭୂମିକୁ ଉଦ୍‌ବୋଧିତ କରିଛନ୍ତି ବଛନ୍ଦଚରଣ । 'ତରୁଣ ସ୍ୱପନର ଅମରାବତୀ' ଓଡ଼ିଶାର 'ବହୁଯୁଗରୁ ତପସ୍ୟା' ସହିତ ଅଛି । ସେ ତପସ୍ୟା କେବେ ବୃଥାଯିବ ନାହିଁ । ସେହି ତପସ୍ୟା-ତରୁ ଅବଶ୍ୟ ପଲ୍ଲବିତ ହେବ । କେବଳ ଉତ୍ସାହ ଓ ଉଦ୍ଦୀପନାର ଆବଶ୍ୟକତା ଅଛି । 'ସାଧବ କୋଳାହଳେ ସୈନ୍ୟ କୁହାଟେ' ଜାତୀୟ-ସ୍ୱପ୍ନ ସତ୍ୟ ହେବ । ମହାଲକ୍ଷ୍ମୀଙ୍କ ସହ ଭାଗ୍ୟ-ବଧୂ ଫେରି ଆସିବ । ଓଡ଼ିଶାର ଦୁର୍ଦ୍ଦଶା ଦର୍ଶନରେ ବଛନ୍ଦଚରଣଙ୍କ ନେତ୍ରରୁ ଯେଉଁ ଶୋକାଶ୍ରୁ ବହୁଥିଲା, ତାହା ଆନନ୍ଦାଶ୍ରୁରେ ପରିଣତ ହୋଇଯିବ ।

'ଷିତିରେ ସନମାନ ବଲ୍ଲେକ ତୋର
ଝରୁଥିବ ନୟନୁ ଆନନ୍ଦ ନୀର !'

ବଛନ୍ଦଚରଣ ଜାଣିଥିଲେ ଯେ ଜଡ଼ତା ହିଁ ଓଡ଼ିଆ ଜୀବନର ଶିଥିଳତାର କାରଣ । ଆଳସ୍ୟ, ତନ୍ଦ୍ରା, ଅଜ୍ଞାନତା, ଭୟ ହେଉଛି ଜଡ଼ତାର ବିବିଧ ରୂପ । ଜଡ଼ତା ଅଷ୍ଟପଦୀର ଶିକାର ହୋଇ ଓଡ଼ିଆ ତେଜ ମଳିନ ହୋଇ ଯାଇଛି ।

'ଓଡ଼ିଆ ନାମେ ଆଉ ନାହିଁ ସୁମ୍ମାନ !'

ପଡ଼ୋଶୀମାନଙ୍କ ଦୃଷ୍ଟିରେ ଓଡ଼ିଆମାନେ ହତାଦର ହୀନଶ୍ରୀ ହୋଇଛନ୍ତି । ଉପରନ୍ତୁ ବହିଃଶତ୍ରୁ ଆଚ୍ଛାଦିତ ହୋଇଗଲେ ପରି ପୁଞ୍ଜୀଭୂତ ଜଡ଼ତାରେ ଓଡ଼ିଆଙ୍କ ଜାତୀୟ-ତେଜ ଲୁକ୍କାୟିତ ହୋଇ ଯାଇଛି । ଓଡ଼ିଆଙ୍କ ଗୌରବମୟ ଅତୀତ ମଣନାହିଁ, ସେ ଶକ୍ତି, ସେ ସାମର୍ଥ୍ୟ ଭସ୍ମାଚ୍ଛାଦିତ ବହ୍ନିଭଳି ଏବେ ବି ସୁପ୍ତ ହୋଇ ରହିଛି । ଯେତେଦିନ ପର୍ଯ୍ୟନ୍ତ ଏହି ଦୁର୍ଭାଗ୍ୟ ଜଡ଼ତା ଘାରି ରହିଥିବ, ସେତେଦିନ ଯାଏ ଓଡ଼ିଆଙ୍କ ଦୁର୍ଦ୍ଦଶା କାଳରାତ୍ରିର ଶେଷ ହେବ ନାହିଁ । ପରପଦ ଲେହନ କରି ବଞ୍ଚିବାକୁ ଯେଉଁ ଆଗ୍ରହ ପ୍ରକାଶ ପାଉଛି, ନିଜକୁ ସାନସ୍ଥାନ ମଣିବାକୁ ଯେଉଁ ପ୍ରବୃତ୍ତି ହେଉଛି, ନିଜର ଗରିମାମୟ ଅତୀତକୁ ବିସ୍ମରଣ କରି ହୀନାନୁକରଣରେ ଯେଉଁ ସ୍ପୃହା ଜାଗୁଛି, ଏସବୁ ସେହି ଜଡ଼ତାର ଫଳ । ସକଳ ଜଡ଼ତାର ଅପହାରିଣୀ, ବାକ୍‌ସ୍ୱରୂପିଣୀ ଭଗବତୀ ବାଗୀଶ୍ୱରୀଙ୍କ କରୁଣା ବିନା ଏ ତମୋମୟ ଜଡ଼ତା ପାଶରୁ ମୁକ୍ତ ହେବା ସମ୍ଭବ ନୁହେଁ ବୋଲି ଜାଣି ବିଚ୍ଛନ୍ଦଚରଣ ବିବିଧ ବାଣୀ-ଆବାହନ-ଗୀତିକା ରଚନା କରି ଅଛନ୍ତି । ଅବଲମ୍ବେ 'ନିଆଶା ନିଶିଥିନୀ ପୁହାଇବା' ପାଇଁ 'ଜଡ଼ତାହାରିଣୀ ବିପଞ୍ଚିବାଦିନୀ' ବାଣୀରାଣୀଙ୍କୁ ସେ ଆକୁଳ ଆବେଦନ ଜଣାଇଛନ୍ତି ।

'ମୃତ ସଞ୍ଜୀବନୀ ଉତ୍କଳ ଅବନୀ
କାନେ ଶୁଣାଅ ସତ୍ୱର ।' (ପୃଷ୍ଠା ୨୪୪)

ସେ ଅମୃତମୟୀ ବୀଣାଝଙ୍କାରରେ 'ସ୍ପନ୍ଦନ ନବୀନ ଲଭୁ ତା ଜୀବନ ଯାଉ ମନ୍ଦାକିନୀ ବହି' ବୋଲି ସେ କହିଛନ୍ତି । ସେକାଳ ବିପକ୍ଷରେ ଏକାଳର ତାନ ବାଜିଉଠୁ ଓ 'ବିଶ୍ୱ-ସାରସ୍ୱତ-ସମାଜରେ ଧନ୍ୟ ଥିବୁ ସମ୍ମାନର ଦ୍ୱାର ।'

"ମା ଭାରତି ! ଧନ୍ୟ ହେଉ ଏହି ଦେଶ
ଦୁର୍ଗତ ଶିଶିର କାଳ ଅନ୍ତେ ଫେରୁ ଉନ୍ମତ-ମାଧବ-ମାସ" (ପୃଷ୍ଠା ୨୪୦)

ବିଚ୍ଛନ୍ଦଚରଣ ଏହି 'ଉନ୍ମତ-ମାଧବ-ମାସ'କୁ ସତ୍ୱାଗ୍ରହୀକରଣରେ ପ୍ରତୀକ୍ଷା କରୁଥିଲେ । ହୁଏତ ତାଙ୍କ ଜୀବନ କାଳ ମଧ୍ୟରେ ତାହା ସାର୍ଥକ ହୋଇ ପାରିଲା ନାହିଁ । କିନ୍ତୁ ଯେଉଁଦିନ ତାହା ସାର୍ଥକ ହେବ, ସେଦିନ ଜଣାପଡ଼ିବ ଯେ ଉତ୍କଳର ସେହି, 'ମାଧବ-ମାସ'ର ଆବାହକମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ ବିଚ୍ଛନ୍ଦଚରଣ । ତାଙ୍କ ଦେଶ-ପ୍ରୀତିର ତୀବ୍ରତା ତାଙ୍କ ପ୍ରଣୟାବେଗ ଠାରୁ କୌଣସି ଗୁଣେ କମ୍ ନଥିଲା ।

ବଚ୍ଛନ୍ଦଚରଣଙ୍କ ପ୍ରେମ-ପ୍ରବାହର ଚରମ ପରିଣତି ଘଟିଲା ଭଗବତ୍ ପ୍ରେମରେ । ଭଗବାନଙ୍କୁ ସେ ଜୀବନ-ଡଙ୍ଗାର ମଙ୍ଗୁଆଲ ବୋଲି ବୋଧ କଲେ । ଭବଭୟ ଓ ଯମଭୟରୁ ନିସ୍ତାର ମିଳିବାପାଇଁ ଭଗବାନଙ୍କୁ ଡଙ୍ଗା ମଙ୍ଗୁଆଲ କରିବା ଛଡ଼ା ଆଉ କଅଣ ବା ଉପାୟ ଥାଇ ପାରେ ? ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନ ସଂକଳନରେ ପ୍ରକାଶିତ ଶ୍ରୀ ଶରଣାଗତ ଚଉତିଶାରେ ବଚ୍ଛନ୍ଦଚରଣ ତାଙ୍କ ହୃଦୟର ଆକୂତି ଅଭିବ୍ୟକ୍ତ କରି ଅଛନ୍ତି । ଯୌବନ ସରି ସରି ଆସୁଛି, ଜୀବନ ଦୀପ ଲିଭି ଲିଭି ଆସୁଛି, ଇନ୍ଦ୍ରିୟମାନଙ୍କ ଶକ୍ତି ହ୍ରାସ ହ୍ରାସ ଯାଉଛି, ତଥାପି ଭୋଗ-ତୃଷ୍ଣାର ଉପଶମ ହେଉନାହିଁ । ଭୋଗାସ୍ବତନ ଶରୀର ଜୀର୍ଣ୍ଣ ହୋଇ ଆସୁଛି, ତଥାପି କାମନା ସମୁଦ୍ରରେ ଅସରନ୍ତି ଢେଉ । ବଚ୍ଛନ୍ଦଚରଣ ବ୍ୟାକୁଳ ହୋଇ ପଚାରିଛନ୍ତି, 'ପ୍ରଭୁ ! କେବେ ଆଉ ଏ ନିରର୍ଥକ ଢେଉମାନେ ଶାନ୍ତ ହେବେ ?' ଯୋଗ-ବଶିଷ୍ଠ ରାମାୟଣର ବୈରାଗ୍ୟ ପ୍ରକରଣ, ଭର୍ତ୍ତୃହରିଙ୍କ ବୈରାଗ୍ୟଶତକ ଓ ଆଚାର୍ଯ୍ୟ ଶଙ୍କରଙ୍କ ମୋହମୁଦ୍‌ଗରର ସ୍ବର ବଚ୍ଛନ୍ଦଚରଣଙ୍କ ପଦାବଳୀକୁ ପ୍ଳାବିତ କରିଛି । ସେ ଜଣାଇଛନ୍ତି,

'ଭ୍ରମି ଭବପଥ ତୃଷାରେ ଆରତ
ଆଶ୍ରା ଏକା ତୁମ୍ଭ କରୁଣାଟଙ୍ଗି ।'

ଭଗବତ୍ କରୁଣା ପ୍ରାପ୍ତି ପାଇଁ ସେ କୃତାଞ୍ଜଳି ପୂର୍ବରେ ପ୍ରାର୍ଥନା କରିଛନ୍ତି । ମହାପ୍ରଭୁ ଜଗନ୍ନାଥଙ୍କୁ ବଚ୍ଛନ୍ଦଚରଣ ନିଜର ପରମ ଇଷ୍ଟ ବୋଲି ସ୍ବୀକାର କରୁଥିଲେ । ତୁଳସୀଦାସଙ୍କ ଶ୍ରୀରାମଚରିତ ମାନସର ବାଲକାଣ୍ଡ ଅନୁବାଦ କରିବା ବେଳେ ବଚ୍ଛନ୍ଦଚରଣ ଲେଖିଛନ୍ତି,

'କଟକେ ସଦା ମୁଁ ପ୍ରବାସୀ
ଇଷ୍ଟ ମୋ ନୀଳଗିରି ବାସୀ ।'

ସେହି ନୀଳାଚଳ ବିହାରୀଙ୍କ ନବକଳେବର ଦର୍ଶନ ପ୍ରସଙ୍ଗରେ କବି କହିଛନ୍ତି,

'ନବ କଳେବର ଧାରଣନ ତୁମ୍ଭ
ଘାତକ ସୃଷ୍ଟିକି ଦେଉଛି ସାରି
ପ୍ରେମ ଚିନ୍ତାମଣି ଉଜାଡ଼ି ଦେବାକୁ
ରଥେ ଆରୋହିଛ ରଥାଙ୍ଗ ଧରି ।'

କୋଇଲି ଭଙ୍ଗୀରେ ରଚିତ ଶ୍ରୀକଳା ଶ୍ରୀମୁଖ ଭଜନ କୋଇଲିରେ 'ବାଧ୍ୟା

ଚୋର'କୁ ଛଡ଼ାଇ ଦେବା ପାଇଁ ଭକ୍ତଗଣଙ୍କୁ ଫେରାଇ ଦେବା ପାଇଁ ସର୍ବସମର୍ଥ ଅନନ୍ତ କୋଟି ବ୍ରହ୍ମାଣ୍ଡପତିଙ୍କୁ ସେ ପ୍ରାର୍ଥନା କରିଛନ୍ତି ।

ବଚ୍ଛନ୍ଦଚରଣ ବୋଧ କରିଛନ୍ତି ଯେ ଜଗନ୍ନାଥଙ୍କ ଶାଶ୍ୱତଧାମ ହେଉଛି ତାଙ୍କ ବାସସ୍ଥଳୀ । ଏ ଭବସଂସାରରେ ସେ 'ପ୍ରବାସୀ' । ବିଧାତା ତାଙ୍କୁ ଏ ପ୍ରବାସ କଷ୍ଟ ଦେଇଛି ।

"କୋଇଲି ! ବାସ ଯିବା ମୋର ତାଙ୍କ ଧାମ
ବହୁ ବର୍ଷ ଅଛି ପରବାସ ହୋଇ ବାମ, ଲୋ କୋଇଲି ।'

ସେ ନିଜ ଅନ୍ତରାତ୍ମାରେ ଅନୁଭବ କରୁଥିଲେ ଯେ

'ଧାମ ତାଙ୍କ ହରାଇ ମୁଁ ଆସି
ଧରାତଳେ ରହିଛଇଁ ହୋଇ ପରବାସୀ, ଲୋ କୋଇଲି ।'

ଧରାତଳର ସକଳ ସୁଖ, ସମ୍ଭୋଗ, ଐଶ୍ୱର୍ଯ୍ୟ ସୌନ୍ଦର୍ଯ୍ୟ ତାଙ୍କୁ 'ଭବ-ପ୍ରବାସ' ଚେତନାରୁ ବିଚ୍ୟୁତ କରାଇ ପାରି ନଥିଲା । ସେ କୃତସଂକଳ୍ପ ହୋଇ କହୁଥିଲେ, ଯିବି ସବୁ ଲୋକ ଲଙ୍ଘି ଜଗନ୍ନାଥ ଆଳେ ।

"ବଡ଼ ଆଶା ପୋଷି ଅଛି ମନେ
ବିଷ୍ଣୁପଦ୍ମରେ ପଶିବି ଗୁରୁ ସୁପ୍ରସନ୍ନେ, ଲୋ କୋଇଲି ।"

ଶ୍ରୀ ରଘୁନାଥ ବେଶ ଜଣାଣରେ 'ଭବଖ୍ୟାତ ବଚ୍ଛନ୍ଦ' ଆଉ ଭବ-ସଂସାରକୁ ଡ଼ରି ନାହାନ୍ତି । ଶ୍ରଦ୍ଧାର ସହିତ ସେ ଘୋଷଣା କରିଛନ୍ତି,

"କି କରିବ ଘୋର ଏ ଭବ-ସଂସାର
ବସିଥିଲେ ନାମ-ନାହାରେ ।"

ଭଗବତ୍ ନାମ ଭଜନ ପ୍ରଭାବ ଉପଲବ୍ଧି କରି ସଂସାର ଭାରକୁ ବଚ୍ଛନ୍ଦଚରଣ ଉପହାସ ବୋଧ କରିଛନ୍ତି । ଲକ୍ଷ୍ମୀ, ସରସ୍ୱତୀଙ୍କ କୃପାରୁ ଏବଂ ଶିବ, ଦୁର୍ଗା, ସୂର୍ଯ୍ୟ, ଗଣେଶଙ୍କ ସଦୟ ସହାୟତାରୁ ସେ ସକଳ ପ୍ରତ୍ୟବାୟକୁ ଅତିକ୍ରମ କରି ଭଗବତ୍ ଧାମ ପ୍ରାପ୍ତି ହେବେ ବୋଲି ଆଶା ପ୍ରକାଶ କରିଛନ୍ତି ।

ଚଉତିଶା ଭଙ୍ଗୀରେ ରଚିତ ଶ୍ରୀ ଦାରୁହରି ଚଉତିଶା ଜଣାଣରେ ଦାରୁହରି ଶ୍ରୀଜଗନ୍ନାଥଙ୍କୁ ସେ ମିନତି କରି କହିଛନ୍ତି,

"ନାମରେ ତୁମ୍ଭର ଦିଅ ରତି ।"

"ଝାଳିଦିଅ ହରି ଚକ୍ଷୁ ମୋହଗିରି
ନୟନୁ ଗରଳ କର ହତ ।"

ଚକ୍ଷୁକୁ ମୋହଶୂନ୍ୟ କର, ଦୃଷ୍ଟିରୁ ଅଜ୍ଞାନ-ପଟଳ ଦୂର କର, ମନକୁ ଭୋଗ-ନାଗପାଶରୁ ମୁକ୍ତକର, 'ନାମରେ ରତି ଦିଅ' 'ରଙ୍ଗାଚରଣରେ ଠାବ ଦିଅ' 'ଏହାଥିଲା ତାଙ୍କର ପ୍ରାର୍ଥନା ବୋଲି ଗ୍ରହଣ କରିଥିଲେ । କିନ୍ତୁ ସେ କହିଛନ୍ତି, 'ଇଷ୍ଟ ମୋ ନୀଳଗିରି ବାସୀ' ଏବଂ 'ଇଷ୍ଟ ମୋ କଳିଙ୍ଗ ସ୍ୱରାଜ୍ଞୀ ।' ଏହି 'ଯୁଗଳ ଇଷ୍ଟ'ଙ୍କ ଠାରେ ସେ ନିଜ ଜୀବନକୁ ସମର୍ପଣ କରି ଦେଇଥିଲେ ।

ବନ୍ଦନା କୁମୁଦର "ତୁମ୍ଭେ ଓ ମୁଁ" କବିତାରେ ଭଗବାନଙ୍କ ସହିତ ନିଜର ସମ୍ପର୍କ ନିର୍ଦ୍ଧାରଣ କରି ସେ କହିଛନ୍ତି, 'ମହାପ୍ରଭୁ ! ତୁମେ ହେଉଛ ଅନନ୍ତ ଗଗନ, ମୁଁ ହେଉଛି ତହିଁରେ ଏକ କ୍ଷୁଦ୍ର ତାରକା । ତୁମ୍ଭେ ସୀମାହୀନ ସିନ୍ଧୁ, ମୁଁ ହେଉଛି ସେ ସିନ୍ଧୁରେ ବିନ୍ଦୁଏ ଜଳ । ତୁମ୍ଭେ ହେଉଛ ବେଗବତୀ ଚିତ୍ରୋତ୍ପଳା ନଦୀ, ମୁଁ ହେଉଛି କ୍ଷୀଣ ବୁଦ୍‌ବୁଦ୍ ଖଣ୍ଡେ । ତୁମ୍ଭେ ଚିଲିକାର ବିସ୍ତୀର୍ଣ୍ଣ ଜଳରାଶି, ମୁଁ ତହିଁରେ ନଗଣ୍ୟ ମୀନ । ତୁମ୍ଭେ ହେଉଛ ଶୋଭାମୟ ଋତୁରାଜ, ମୁଁ ହେଉଛି ସାମାନ୍ୟ ଫୁଲକଳି । ତୁମ୍ଭେ ଶ୍ରାନ୍ତିହର ମଳୟ ପବନ, ମୁଁ ତହିଁରେ ପରାଗ ଧୂଳି ମାତ୍ର । ତୁମ୍ଭେ ଅଖିଳ ବ୍ରହ୍ମାଣ୍ଡେଶ୍ୱର, ମୁଁ ତୁମ୍ଭର ଦାସାନୁଦାସ । ତୁମ୍ଭେ ଚତୁର୍ବର୍ଗ ଦାତା ରାଜାଧିରାଜ, ମୁଁ ଜଣେ ଭିକାରୀ । ହେ ଦୀନଜନ ଚିନ୍ତାମଣି, ମୁଁ ଦୀନଜନ-ମାନଙ୍କ ମଧ୍ୟରେ ଦୀନ । ଏହି ଚିତ୍ରକଳ୍ପମାନଙ୍କ ଦ୍ୱାରା ବିବିଧ ବିଧିରେ କବି ନିଜର ମହାନୁଭବ ପ୍ରିୟତମଙ୍କ ସହିତ ନିଜ ସମ୍ପର୍କ ନିର୍ଦ୍ଧାରଣ କରିଛନ୍ତି । ପ୍ରଭୁଙ୍କଠାରେ ସେ ଦେଖିଛନ୍ତି ବ୍ୟାପ୍ତି, ପ୍ରଶାନ୍ତି, ଆଶ୍ୱସ୍ତି, ଐଶ୍ୱର୍ଯ୍ୟ ଓ ମହାନତା । ନିଜକୁ ବି ଭିନ୍ନ ଭାବରେ ସେହି ବିଭବ ସହିତ ସଂଯୋଜିତ କରି ବିଚ୍ଛନ୍ଦଚରଣ ବିଶ୍ୱବାନ୍ଧବ, ବିଶ୍ୱାତ୍ମାଙ୍କ ସହିତ ଆତ୍ମୀୟତା ପ୍ରତିଷ୍ଠା କରି ଅଛନ୍ତି । ମହାକାଶର ଅନନ୍ତ ବ୍ୟାପ୍ତିରେ ଅଙ୍ଗୀଭୂତ କ୍ଷୁଦ୍ର ତାରକା ପରି ସେ ନିଜକୁ ମନେ କରିଛନ୍ତି । ସେ କେବଳ ନୁହନ୍ତି, ତାଙ୍କ ଭଳି ଅଗଣିତ ତାରକା ସେହି ମହାବ୍ୟାପ୍ତିରେ ଅଂଶୀଦାର । ସୀମାହୀନ ମହାସିନ୍ଧୁରେ ସେ ନିଜେ ଗୋଟିଏ ଅବିଚ୍ଛିନ୍ନ ଜଳବିନ୍ଦୁ । ସିନ୍ଧୁରେ ଜଳବିନ୍ଦୁର ସ୍ୱତନ୍ତ୍ର ସତ୍ତା ନଥାଏ, କିନ୍ତୁ ଜଳବିନ୍ଦୁ ସିନ୍ଧୁରେ ଅଛି ବୋଲି ପ୍ରତ୍ୟୟ ଅବାନ୍ତର ନୁହେଁ । ଏଠାରେ ବ୍ୟାପ୍ତି ସହିତ ତଲ୍ଲୀନତାର ଅନୁଭବ କଥା ସେ କହିଛନ୍ତି । ବେଗବତୀ ଚିତ୍ରୋତ୍ପଳାର ପ୍ରଖର ସ୍ରୋତରେ ଧାବିତ ବୁଦ୍‌ବୁଦ୍ ଖଣ୍ଡର ସ୍ଥିତି, ଗତି ଓ ସଙ୍ଗତି କେବଳ ସେହି ସ୍ରୋତସ୍ୱିନୀ ପ୍ରବାହରେ ହିଁ ଆଧାରିତ । ଆଧାର-ଠାରେ ଆଧେୟର ସଂପୂର୍ଣ୍ଣ ସମର୍ପିତ ଭାବ ଏଠାରେ ବିବକ୍ଷିତ ହୋଇଅଛି ।

ଜଳବିନା ମୀନର ସ୍ଥିତି ଅସମ୍ଭବ । ଦୁଗ୍ଧ କିମ୍ବା ମଧୁରେ ନୁହେଁ କେବଳ ଜଳରେ ହିଁ ମୀନର ଆଶ୍ରୟ ଓ ମୀନର ଆଶ୍ୱସ୍ତି । 'ମୀନ' ଶବ୍ଦକଳ୍ପ ଏହି ତଦାଶ୍ରିତ ଭାବ ପ୍ରକଟ କରେ । ରଘୁରାଜଙ୍କ ବିପୁଳ ଐଶ୍ୱର୍ଯ୍ୟରେ ସାମାନ୍ୟ ଫୁଲ କଳିଟିଏ ମଧ୍ୟ ଅଂଶୀଦାର । ଯେତେ କ୍ଷୁଦ୍ର ହେଲେ ହେଁ ତାହା ବାସନ୍ତୀ-ବିଭୂତିର ଆତ୍ମ-ପ୍ରକାଶ । ମଳୟ ପବନରେ ପରାଗ-ଧୂଳିର ଅବସ୍ଥା ମଧ୍ୟ ତଦ୍ରୂପ । ଭଗବାନଙ୍କ ଠାରେ ସମ୍ପୂର୍ଣ୍ଣ ତଦାଶ୍ରିତ ଭାବ ପୋଷଣ କରି ଭଗବତ୍ ପ୍ରସାଦ ଲାଭ କରିବା ଲାଗି ଦୀନ ଭିକାରୀ ହୋଇ ଠିଆ ହୋଇଛନ୍ତି ବିଚ୍ଛନ୍ଦଚରଣଙ୍କ ଆତ୍ମା-ପୁରୁଷ । ଚତୁର୍ବର୍ଗଦାତା ଚିନ୍ତାମଣିଙ୍କ ପାଖରେ କାହାର କେଉଁ ଅଭିଳାଷ ବା ଅପୂରଣ ରହିପାରେ ? ବିଚ୍ଛନ୍ଦଚରଣଙ୍କର ଏକାନ୍ତ ଅଭିଳାଷ ଥିଲା ଜଗନ୍ନାଥଙ୍କ ପରମଧାମ ପ୍ରାପ୍ତି । ସେ ନିଜକୁ ସେହି ପରମ ଧାମର ଅଧିବାସୀ ବୋଲି ଚିନ୍ତା କରୁଥିଲେ । ତେଣୁ ଏ ଭବ-ସଂସାର ତାଙ୍କ ପାଇଁ ଥିଲା 'ପ୍ରବାସ' । ପ୍ରବାସରୁ ଘରବାହୁଡ଼ା ଥିଲା ତାଙ୍କର ଚିରପୋଷିତ ଅଧ୍ୟାତ୍ମ ଅଭିଳାଷ । ସେ ନିଜକୁ ନିତ୍ୟ-ଲୋକବାସୀ ସ୍ଥିର ସୁଖର ଅଧିକାରୀ ବୋଲି ଭାବନା କରୁଥିଲେ । ତେଣୁ ଅସ୍ଥିର, ଅନିତ୍ୟ ସଂସାର ତାଙ୍କ ପାଖରେ ପ୍ରବାସ ପରି ବୋଧ ହେବା ସ୍ୱାଭାବିକ । କିନ୍ତୁ ବିଚ୍ଛନ୍ଦଚରଣ ବିଷାଦବାଦୀ ନଥିଲେ କି ପଳାୟନପନ୍ଥୀ ନଥିଲେ । ପଦେ ପଦେ ଆନନ୍ଦର ଉତ୍ଫୁଲ୍ଲ ଜୁଆର ତାଙ୍କ ଜୀବନକୁ ଘେରି ରହିଥିଲା । କାରଣ, ସେ ନିଜକୁ ଆନନ୍ଦମୟ ଶାଶ୍ୱତ ଧାମର ସ୍ଥାୟୀ ବାସିନ୍ଦା ବୋଲି ଧାରଣା ପୋଷଣ କରୁଥିଲେ । ସେହି କାରଣରୁ ମଧ୍ୟ ସେ ନିଜକୁ ଅପରାଜେୟ ବୋଲି ମନେ କରୁଥିଲେ ଏବଂ ଏକ ଅନମନୀୟ ସଂଗ୍ରାମୀ ମନୋବୃତ୍ତି ଘେନି ଜୀବନର ସମସ୍ତ ସମସ୍ୟାକୁ ମୁକାବିଲା କରୁଥିଲେ । ତାଙ୍କ ସାରସ୍ୱତ ସୃଷ୍ଟିମାନଙ୍କରେ ତାଙ୍କ ମନୋବୃତ୍ତିର ସ୍ପଷ୍ଟ ପ୍ରତିଫଳନ ଘଟିଅଛି ।



୯

# ଅନୁବାଦ କୃତି

ବିଚ୍ଛନ୍ଦଚରଣଙ୍କ ଅନୁବାଦ କଳା-ପାଟବ ଆଜି ମଧ୍ୟ ଅବିସ୍ମରଣୀୟ ହୋଇ ରହିଛି । କେବଳ ଆକ୍ଷରିକ ଅନୁବାଦ ନୁହେଁ, ଭାବାନୁବାଦ ତଥା ମର୍ମାନୁବାଦ ସଂପାଦନ କରିବାରେ ବିଚ୍ଛନ୍ଦଚରଣ ସିଦ୍ଧହସ୍ତ ଥିଲେ । ତାଙ୍କର ନିଜସ୍ୱ କବିପ୍ରତିଭା ସହିତ ଓଡ଼ିଆ, ହିନ୍ଦୀ, ବଙ୍ଗଳା, ସଂସ୍କୃତ ଏବଂ ବିଶେଷ କରି ଇଂରାଜୀ ଭାଷାରେ ଅସାଧାରଣ ବ୍ୟୁତ୍ପତ୍ତି ତାଙ୍କୁ ଜଣେ ସଫଳ ଅନୁବାଦକ ସମ୍ମାନର ଅଧିକାରୀ କରାଇ ଥିଲା । ଜାତୀୟତା ବୋଧର ତୀବ୍ର ତାଡ଼ନାରେ ସେ ମାତୃଭାଷା ଓଡ଼ିଆର ସାରସ୍ୱତ ସଂପଦକୁ ହିନ୍ଦୀ ମାଧ୍ୟମରେ ସର୍ବଭାରତୀୟ ସ୍ତରରେ ତଥା ଇଂରାଜୀ ମାଧ୍ୟମରେ ଆନ୍ତର୍ଜାତିକ ସ୍ତରରେ ପରିଣତ କରାଇବା ପାଇଁ ଅନୁବାଦକୁ ପ୍ରଶସ୍ତ ରାଜମାର୍ଗ ବୋଲି ସ୍ୱୀକାର କରିଥିଲେ । ଆବାଲ୍ୟରୁ ଅନୁବାଦ କାର୍ଯ୍ୟରେ ତାଙ୍କ ଯେଉଁ ଦକ୍ଷତା ପ୍ରକଟିତ ହୋଇଥିଲା, ତାହା କ୍ରମଶଃ ପରିପକ୍ୱତା ଲାଭ କରିବାକୁ ଲାଗିଲା । ପ୍ରାଚୀ ପତ୍ରିକା ସଂପାଦନ କାଳରେ ଅନୁବାଦ କାର୍ଯ୍ୟକୁ ବିଚ୍ଛନ୍ଦଚରଣ ଅଗ୍ରାଧିକାର ଦେଉଥିଲେ । ଓଡ଼ିଆ ସାହିତ୍ୟ ସଂପଦକୁ ବିଶ୍ୱଦରବାରରେ ଉପସ୍ଥାପିତ କରିବା ଲାଗି ତଥା ବିଶ୍ୱ-ସାହିତ୍ୟ-ସଂପଦକୁ ଓଡ଼ିଆ ସାହିତ୍ୟର ଅଙ୍ଗୀଭୂତ କରିବାପାଇଁ ଅନୁବାଦର ଗୁରୁ ଆବଶ୍ୟକତା ସେ ଅନୁଭବ କରୁଥିଲେ । ଅନୁବାଦ ମାଧ୍ୟମରେ ଭାବଗତ ଆଦାନ-ପ୍ରଦାନ ତଥା ସାଂସ୍କୃତିକ- ସଂଳାପ ଯେ ସମ୍ଭବ ହେବ, ଏଥିରେ ତାଙ୍କର ତିଳେ ହେଲେ ସନ୍ଦେହ ନଥିଲା । ତେଣୁ ନିଜର ମୌଳିକ ରଚନାଠାରୁ ଅନୁବାଦକୁ କୌଣସି ଗୁଣରେ କମ୍ ବୋଲି ସେ ମଣୁ ନଥିଲେ । ଅନୁବାଦ କାର୍ଯ୍ୟରେ ନିଜର ଶ୍ରମ ଓ ସମୟକୁ ବିନିଯୋଗ କରିବାକୁ ସେ ସର୍ବଦା ତତ୍ପର ଥିଲେ । ଏହା ମଧ୍ୟ ସ୍ମରଣ ରଖିବାକୁ ହେବ ଯେ ବିଚ୍ଛନ୍ଦଚରଣଙ୍କ ଦେଶପ୍ରୀତି ନୁହେଁ କି କବିପ୍ରତିଭା ନୁହେଁ—କେବଳ ତାଙ୍କର ଅନୁବାଦ-ସାମର୍ଥ୍ୟ ତାଙ୍କ ଅନ୍ନ-ସଂସ୍ଥାନରେ ସହାୟକତା କରିଥିଲା । ସେ ଥିଲେ ଓଡ଼ିଶା ସରକାରଙ୍କ ରାଇଟର ଟ୍ରାନସ୍‌ଲେଟର (ଲେଖକ ଅନୁବାଦକ) କର୍ମଗୃଷ୍ଣ ।

ବିଭିନ୍ନ ଓଡ଼ିଆ ସମ୍ବାଦ ପତ୍ରମାନଙ୍କ ସାମ୍ବାଦିକ ଲେଖାମାନଙ୍କୁ ତଥା ପ୍ରମୁଖ ସମ୍ବାଦମାନଙ୍କୁ ଇଂରାଜୀରେ ଅନୁବାଦ କରିବା ତାଙ୍କର ଦୈନନ୍ଦିନ କର୍ମ ଥିଲା । ସେ

ତାହା ଏପରି ନିପୁଣତାର ସହିତ ସମ୍ପାଦନ କରୁଥିଲେ ଯେ ବିଭାଗୀୟ ମର୍ଯ୍ୟାଦା ଲାଭ କରିବା ଲାଗି ତାଙ୍କୁ କେବେ ଚିନ୍ତିତ ହେବାକୁ ପଡ଼ିନାହିଁ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-କବିତାର ଇଂରାଜୀ ଅନୁବାଦ ପ୍ରସଙ୍ଗରେ ବିଚ୍ଛନ୍ଦଚରଣ ଲେଖିଛନ୍ତି, "ଉପେନ୍ଦ୍ର ଭଞ୍ଜଙ୍କ କେବଳ ଭାବ-ସମ୍ପଦକୁ ଭାଷାନ୍ତର ମାଧ୍ୟମରେ ବିଦେଶରେ ପହଞ୍ଚାଇ ଦିଆଯାଇ ପାରିବ, କିନ୍ତୁ ତାଙ୍କ କବିତାର ଅନ୍ତର୍ନିହିତ ସଙ୍ଗୀତ ମାଧୁର୍ଯ୍ୟ ଏବଂ ଆଲଙ୍କାରିକ ପ୍ରୟୋଜନ ସିଦ୍ଧି କରୁଥିବା ଶବ୍ଦ-ସଂସ୍ଥାନ-ମାନଙ୍କର ଐନ୍ଦ୍ରଜାଲିକତାକୁ ବହନ କରିବାକୁ ଅନୁବାଦ ମାତ୍ରକେ ଅସମର୍ଥ ।" ଅନୁବାଦରୁ ଭାବ ଆହରଣ କରି ବିଦେଶର ସୁଧୀମଣ୍ଡଳୀ ହୁଏତ ଦିନେ ମୂଳରଚନାକୁ ପାଠ କରିବାପାଇଁ ଉତ୍ସୁକ ହେବେ । କିନ୍ତୁ କୌଣସି ଅନୁବାଦ, କେବେହେଲେ ମୂଳରଚନାର ସମକକ୍ଷ ହୋଇ ପାରିବ ନାହିଁ । ଏହା କେବଳ ଉପେନ୍ଦ୍ର ଭଞ୍ଜଙ୍କ କବିତା ବିଷୟରେ ନୁହେଁ ବରଂ ସମସ୍ତ କବିତାମାନଙ୍କ ବିଷୟରେ ସତ୍ୟ । ଜଣେ ଅନୁବାଦକ ଭାବରେ ମୁଁ ମୋ କାର୍ଯ୍ୟର ଦୁରୂହତା ବିଷୟରେ ସଚେତନ ଅଛି ।

ବିଚ୍ଛନ୍ଦଚରଣ ବୁଝିଥିଲେ ଯେ ଯେଉଁ କବିଙ୍କ ରଚନାରେ ମାନବ ଜୀବନର ସାର୍ବଜନୀନ ଉପାଦାନକୁ ଉଦ୍‌ଘାଟିତ କରିବା ଆବେଦନ ଭରି ରହିଛି, ସେ କବି କୌଣସି ଆଞ୍ଚଳିକ ବେଷ୍ଟନୀ ମଧ୍ୟରେ ଆବଦ୍ଧ ହୋଇ ରହିପାରିବ ନାହିଁ । ଏହି ସତ୍ୟ ହିଁ ଅନୁବାଦମାନଙ୍କୁ ସାର୍ଥକତା ପ୍ରଦାନ କରିଛି । ଗ୍ରନ୍ଥ ଅନୁବାଦ ବିଷୟରେ ଏହି ସାଧାରଣ ସତ୍ୟଗୁଡ଼ିକ ପ୍ରତି ଅବହିତ ରହି ବିଚ୍ଛନ୍ଦଚରଣ ଅନୁବାଦ କାର୍ଯ୍ୟ କରିଯାଇ ଅଛନ୍ତି ।

ବିଚ୍ଛନ୍ଦଚରଣଙ୍କ ବିଶିଷ୍ଟ ଅନୁବାଦ ଗ୍ରନ୍ଥ ହେଉଛି, "କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସୋଭେନିର", କବିସମ୍ରାଟଙ୍କ ରଚିତ "ରସିକ ହାରାବଳୀ" କାବ୍ୟର ଅଷ୍ଟମ, ନବମ, ଏକାଦଶ ଛାନ୍ଦ, "ଲାବଣ୍ୟବତୀ" କାବ୍ୟର ନବମ, ଚତୁର୍ଦ୍ଦଶ, ଦ୍ୱାବିଂଶ ଛାନ୍ଦ, "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ" ଓ "ପ୍ରେମସୁଧାନିଧି" କାବ୍ୟର ସପ୍ତମ, ଚତୁର୍ଦ୍ଦଶ ଛାନ୍ଦ, "ରସଲେଖା" କାବ୍ୟର କିଛି ଛାନ୍ଦର ଇଂରାଜୀ ଅନୁବାଦ ତହିଁରେ ସନ୍ନିବେଶିତ ହୋଇଛି । ମୁଖବନ୍ଧରେ ବିଚ୍ଛନ୍ଦଚରଣ ଲେଖିଛନ୍ତି, "ନିଶ୍ଚିତ ଯେ ଯେଉଁ ଦିନ ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥମାନଙ୍କର ସମ୍ପୂର୍ଣ୍ଣ ଇଂରାଜୀ ଅନୁବାଦ ପ୍ରକାଶିତ ହେବ, ତାହା କଳିଙ୍ଗର ଅତୁଳନୀୟ ପ୍ରସ୍ତର ଶିଳ୍ପ (ଭାସ୍କର୍ଯ୍ୟ) ପରି ବିଶ୍ୱରେ ଆଦର ଲାଭ କରିବ । ଉପେନ୍ଦ୍ର ଭଞ୍ଜଙ୍କ କବିତାର ବିସ୍ମୟକର ଉତ୍କର୍ଷ ପ୍ରତି ଏଠାରେ ମୁଁ କେବଳ ସାଧାରଣ

ଭାବରେ ଇଙ୍ଗିତ ମାତ୍ର କରିଅଛୁ । ତାହା ଯଥାର୍ଥରେ ଅତଳସ୍ପର୍ଶୀ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାବଳୀକୁ ସମସ୍ତ ଦିଗରୁ ଅଧ୍ୟୟନ କରିବା, ମହାନ୍ ହିମାଳୟକୁ ପରିମାପ କରିବା ଭଳି ଏକ ଦୁଃସାହସିକ ବ୍ୟାପାର ।" ଏକଶହ ପଞ୍ଚାଅଶୀ ପୃଷ୍ଠା ବିଶିଷ୍ଟ ଏହି ଅନୁବାଦ ଗ୍ରନ୍ଥ ୧୯୬୦ ମସିହାରେ କଳିଙ୍ଗ ଭାରତୀ ଭଞ୍ଜ ଜୟନ୍ତୀ ଉପଲକ୍ଷେ ପ୍ରକାଶିତ । ଆକାରରେ କ୍ଷୁଦ୍ର ହେଲେ ହେଁ "ଗ୍ଲିମ୍ପସେସ୍ ଇନ୍‌ଟୁ କବିସୂର୍ଯ୍ୟ" ବିଚ୍ଛନ୍ଦଚରଣଙ୍କର ଏକ ସାର୍ଥକ ଅନୁବାଦ କୃତି । କବିସୂର୍ଯ୍ୟ ବଳଦେବ ରଥଙ୍କ ରଚିତ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ"ର ସଂସ୍କୃତ ମଙ୍ଗଳାଚରଣ, ଓଡ଼ିଆ 'କ' 'ଘ' 'ଝ' ଗୀତ, ଏବଂ 'ମ' ଗୀତର କିୟଦଂଶ ଓ ସଂସ୍କୃତ ଉପସଂହାରକୁ ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି ବିଚ୍ଛନ୍ଦଚରଣ । କବିସୂର୍ଯ୍ୟଙ୍କ ଗୀତିକବିତା ମଧ୍ୟରୁ ଆଠଗୋଟି ଓ "ଚନ୍ଦ୍ରକଳା" କାବ୍ୟର ଦ୍ୱିତୀୟ ଛାନ୍ଦର କେତେକାଂଶ ଇଂରାଜୀରେ ଅନୂଦିତ ହୋଇଅଛି । ଅଠେଇଶି ପୃଷ୍ଠା ସମ୍ବଳିତ ଏହି ପୁସ୍ତିକା କଳିଙ୍ଗଭାରତୀ ଅନୁଷ୍ଠାନ ଦ୍ୱାରା ଆୟୋଜିତ କବିସୂର୍ଯ୍ୟ ଜୟନ୍ତୀ ଉପଲକ୍ଷେ ୧୯୬୭ ମସିହାରେ ଆତ୍ମପ୍ରକାଶ କରିଅଛି ।

୧୯୬୯ ମସିହାରେ "କଳିଙ୍ଗଭାରତୀ ସୋଭେନିର" ପ୍ରକାଶିତ ହେଲା । ତହିଁରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଛାନ୍ଦରୁ ଦୁଇଟି, ଦୀନକୃଷ୍ଣ, ଅଭିମନ୍ୟୁ ଏବଂ କବିସୂର୍ଯ୍ୟ ବଳଦେବ ରଥଙ୍କ ରଚିତ ଗୋଟିଏ ଗୋଟିଏ ଛାନ୍ଦର ଇଂରାଜୀ ଅନୁବାଦ ସ୍ଥାନ ପାଇଛି । ଦୀନକୃଷ୍ଣଙ୍କ ପରିଚୟ ପ୍ରଦାନ କରି ବିଚ୍ଛନ୍ଦଚରଣ ଲେଖିଛନ୍ତି. "ସେ ନିଜର ଦୁଃଖ ଯନ୍ତ୍ରଣାକୁ ପୌରୁଷର ସହିତ ସହ୍ୟ କରି ଥିଲେ ଓ ନିଜ ଲକ୍ଷ୍ୟରୁ ଟଳେ ହେଲେ ବିଚଳିତ ହୋଇ ନଥିଲେ । ତାଙ୍କ ରଚନାର ବହୁସ୍ଥଳରେ ତାଙ୍କ ଦୁଃଖ ଦୁର୍ଦ୍ଦଶା ବିଷୟରେ ଉଲ୍ଲେଖ ମିଳେ ।" ଦୀନକୃଷ୍ଣ ଦାସଙ୍କ ରସ କଲ୍ଲୋଳ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ "ବିଦଗ୍ଧ ଚିନ୍ତାମଣି"କୁ ବିଚ୍ଛନ୍ଦଚରଣ ମନୋଜ୍ଞ ଆଧ୍ୟାତ୍ମିକ କବିତା ବୋଲି ଆଖ୍ୟାତ କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ "ବୈଦେହୀଶ ବିଳାସ" ସହିତ ଏହି କାବ୍ୟମାନଙ୍କର ଇଂରାଜୀ ଓ ହିନ୍ଦୀ ଅନୁବାଦ ପ୍ରକାଶ କରିବା ପାଇଁ ସେ କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀକୁ ଉତ୍ସାହିତ କରୁଥିଲେ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ "ପ୍ରେମ ସୁଧାନିଧି କାବ୍ୟର ଇଂରାଜୀ ଓ ହିନ୍ଦୀ ଅନୁବାଦ ଏକତ୍ର ପ୍ରକାଶ କରିବା ପାଇଁ ସେ ବଦ୍ଧପରିକର ଥିଲେ । ତାଙ୍କର ଆଶା ଥିଲା ଯେ ତାଙ୍କ ଜୀବନ କାଳ ମଧ୍ୟରେ ଏହି ଅନୁବାଦମାନ ଅବଶ୍ୟ ପ୍ରକାଶିତ ହେବ । କିନ୍ତୁ ଏହି ଆଶା ବାସ୍ତବ ରୂପ ଧାରଣ କଲା ନାହିଁ, କିନ୍ତୁ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏକ ଅପରିହାର୍ଯ୍ୟ କର୍ମ-ଯୋଜନା ହୋଇ ରହିଗଲା ।

ବିଚ୍ଛନ୍ଦଚରଣଙ୍କ ଅନୁବାଦ-ପ୍ରଚେଷ୍ଟାର ଦୁଇଟି ଦିଗ ସୁସ୍ପଷ୍ଟ । ଗୋଟିଏ ହେଉଛି ଓଡ଼ିଆ ସାହିତ୍ୟର ଅମୂଲ୍ୟରତ୍ନମାନଙ୍କୁ ଭାଷାନ୍ତର ମାଧ୍ୟମରେ ଅନ୍ୟ ଭାଷା-ଭାଷୀ ଭୂମି ତଥା ବିଶ୍ୱରେ ଉପସ୍ଥାପନ କରିବା ଏବଂ ସମାନ ଶକ୍ତିଶାଳୀ ଅନ୍ୟ ଦିଗଟି ହେଉଛି ବିଶ୍ୱସାହିତ୍ୟର ଅମୂଲ୍ୟ ରତ୍ନମାନଙ୍କୁ ଭାଷାନ୍ତର ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ଆମଦାନୀ କରିବା । କଳିଙ୍ଗ ଭାରତୀ ସାଧକ ଗୋଷ୍ଠୀର ଏକ ପ୍ରମୁଖ ସଭ୍ୟ ଇଞ୍ଜିନିୟର ଶ୍ରୀ ଚନ୍ଦ୍ରଶେଖର ଯଥାର୍ଥ ଲେଖିଛନ୍ତି, ବିଚ୍ଛନ୍ଦଚରଣ ସୃଷ୍ଟି ଥିଲେ ସାହିତ୍ୟ ବିପଣୀରେ ସବୁ ଦେଶର କଳା, ସଙ୍ଗୀତ ଓ ସଂସ୍କୃତିର ଆଦାନ ପ୍ରଦାନ ହେଉ, ସାହିତ୍ୟ ଗର୍ଭ ମନ୍ତ୍ର ହେଉ "ଓଡ଼ିଆ ପାଠକମାନଙ୍କ ପାଇଁ ସଂସ୍କୃତ, ଇଂରାଜୀ, ହିନ୍ଦୀ, ସାହିତ୍ୟର ଅପୂର୍ବ ରସ, ରାଗ, ଭାବ, ବ୍ୟଞ୍ଜନାର ଗଙ୍ଗାକୁ ଭଗୀରଥ ସାଜି ଆମନ୍ତ୍ରଣ କରି ଆଣିବେ ବିଚ୍ଛନ୍ଦଚରଣ ।" ତାଙ୍କର ଲେଖନୀ ମାଧ୍ୟମରେ ସଂସ୍କୃତ, ହିନ୍ଦୀ, ଇଂରାଜୀ, ଫରାସୀ, ଇଟାଲୀୟ, ମାର୍କିନ ଭାଷା ପ୍ରଭୃତିର କବିତାମାନ ଓଡ଼ିଆ ଭାଷାରେ ଅନୂଦିତ ହୋଇ ନୂତନ ରୂପ ପରିଗ୍ରହ କଲେ ।" ବିଚ୍ଛନ୍ଦଚରଣଙ୍କ ନିଜସ୍ୱ କବିତ୍ୱର ଯାଦୁକରୀ ସ୍ପର୍ଶରେ ବହିର୍ଭାରତ କବିତାବଳୀ ନବକଳେବର ଧାରଣ କରି ଓଡ଼ିଆ ସାହିତ୍ୟର ଅଙ୍ଗୀଭୂତ ହୋଇ ଯାଇଅଛନ୍ତି । ବିଚ୍ଛନ୍ଦଚରଣଙ୍କ ଓଡ଼ିଆ ଅନୁବାଦମାନଙ୍କୁ ପାଠ କଲେ ଅନେକ କ୍ଷେତ୍ରରେ ତାହା ଏକ ମୌଳିକ ରଚନା ବୋଲି ପ୍ରତୀୟମାନ ହୋଇଥାଏ । ଏପରିକି କବିତାରେ ବର୍ଣ୍ଣିତ ଭାବଉଦ୍‌ବେଳନ ତାଙ୍କର ନିଜସ୍ୱ ବୋଲି ଧାରଣା ଉପୁଜି ଥାଏ । ସେଥିପାଇଁ କେତେକ କବିତାକୁ ସେ ମୂଳ କବିତାର "ଅନୁବାଦ" ବୋଲି ଉଲ୍ଲେଖ କରିଥିଲା ବେଳେ ଆଉ କେତେକକୁ ମୂଳ କବିତାର "ଓଡ଼ିଆ ସଂସ୍କରଣ" ନାମରେ ଅଭିହିତ କରିଅଛନ୍ତି ।

କବିତା କୁମୁଦରେ ସନ୍ନିବେଶିତ କବିତାମାନଙ୍କ ମଧ୍ୟରେ "ପ୍ରମଦା ଜୟନ୍ତୀ" କବିତାଟି ହେଉଛି ଇଂରାଜୀ କବି ଟି. କ୍ୟାମ୍ପବେଲଙ୍କ "ଲର୍ଡ଼ ଉଲିନ୍‌ସ୍ ଡଟର" ନାମକ କବିତାର "ଓଡ଼ିଆ ସଂସ୍କରଣ" "ପ୍ରିୟା ବିଚ୍ଛେଦ" କବିତାଟି ହେଉଛି ଏଚ୍. ଏଫ୍. ଲିଟ୍‌ଙ୍କ "ଲଷ୍ଟ ଲଭ୍" କବିତାର ଓ ଜଗଜ୍ଜନ ଈର୍ଷଣୀୟା ମମ ଗଳାମାଳା କବିତାଟି ମଧ୍ୟ ଲିଟ୍‌ଙ୍କ "ଆନୀ" କବିତାର "ଅନୁବାଦ" । "ଲୋତକାଭିଷେକ" କବିତାଟି ଓ "ଜୀବନ ଗୌରବ" କବିତାଟି ଯଥାକ୍ରମେ ଇଂରାଜୀ କବି ଲର୍ଡ଼ ବାଇରନ୍‌ଙ୍କ "ଏଲେଜି ଅନ ଥାୟ୍ୟାଜା" କବିତାର "ଓଡ଼ିଆ ସଂସ୍କରଣ ଓ "ଅଲ୍ ଫର ଲଭ୍" କବିତାର "ଗ୍ରୀଷ୍ମାରେ ଲିଖିତ" । ଇଂରାଜୀ କବି ଶେଲୀଙ୍କ "ଇଣ୍ଡିୟାନ ସିରେନେଡ୍" କବିତାର ଓଡ଼ିଆ ଅନୁବାଦ ହେଉଛି "ମୋ ଚିର ସମାଧି ହେଉ ଉରସ ତୋର" କବିତାଟି ଏବଂ ଶେଲୀଙ୍କ "ଲଭ୍‌ସ୍ ଫିଲୋସଫି"ର ଓଡ଼ିଆ ଅନୁବାଦ

ହୋଇଛି, "କେହି ତ ଦରଦୀ ଜନ ଏକାକୀ ନାହିଁ ।" ଓଡ଼ିଆ ନାମ କରଣରୁ ଏହା ମଧ୍ୟ ସୂଚିତ ହେଉଛି ଯେ ବିଚ୍ଛନ୍ଦଚରଣ କେବଳ ଆକ୍ଷରିକ ଭାଷାନୁବାଦ କରି ନାହାନ୍ତି, କିନ୍ତୁ କବିତାଟିର ମର୍ମାନୁବାଦ କରିଛନ୍ତି । 'ସୈନିକର ଅନୁଚିନ୍ତା' କବିତାଟି ଏକ ଋଷୀୟ କବିତାର ଛାୟାରେ ଲିଖିତ । ଏହା ବ୍ୟତୀତ 'ମନୋରମା' 'ଶୈଶବରଞ୍ଜନ', 'କବିର ସଙ୍ଗୀତ' କବିତା ପ୍ରତ୍ୟକ୍ଷ ଅନୁବାଦ ନ ହେଲେ ହେଁ ପରୋକ୍ଷରେ କବିବରଗତ ଭାବ ଦ୍ୱାରା ସମୃଦ୍ଧ । 'ମନୋରମା' କବିତା ଆରମ୍ଭରେ ଟି. କ୍ୟାମ୍ପେଲଙ୍କ ଦୁଇଧାଡ଼ି ଇଂରାଜୀ କବିତା ଏବଂ 'କବିର ସଙ୍ଗୀତ' କବିତା ପ୍ରାରମ୍ଭରେ ଓମାର ଖାୟାମଙ୍କ କବିତାର ଇଂରାଜୀ ଅନୁବାଦରୁ ଗୋଟିଏ ପଦ ଉଦ୍ଧାର କରାଯାଇଛି । ଦୁଇଟି ଯାକ ଉଦ୍ଧୃତ, ଦୁଇଟି ଯାକ କବିତାର ମର୍ମ ଉଦ୍‌ଘାଟନରେ ସହାୟକ ହୋଇଅଛି । ସମ୍ଭବତଃ ଏହି ଉଦ୍ଧୃତ ପ୍ରଭାବରୁ କବି ବିଚ୍ଛନ୍ଦଚରଣ ସେହି କବିତା ରଚନା କରିବାକୁ ପ୍ରେରଣା ଲାଭ କରିଛନ୍ତି ।

କବିଙ୍କ ଭାରତୀ ସୋପାନର 'ବିଶ୍ୱ ସାହିତ୍ୟ ସୌରଭ' ବିଭାଗରେ ପାଶ୍ଚାତ୍ୟ ଦେଶୀୟ କବିତାମାନଙ୍କ ଇଂରାଜୀ ଅନୁବାଦରୁ ଓଡ଼ିଆ ଅନୁବାଦ କରିଛନ୍ତି ବିଚ୍ଛନ୍ଦ-ଚରଣ । ଉଇଲିୟମ ସେକ୍‌ସପିୟରଙ୍କ ଚତୁର୍ଦ୍ଦଶପଦୀ କବିତାରୁ ଅନୂଦିତ 'ମୃତ୍ୟୁଞ୍ଜୟ ପ୍ରୀତି' ଶୀର୍ଷକ ଗୀତଟି 'ଆହେ ନୀଳାଚଳ ବିହାରୀ' ବୃତ୍ତରେ ଅନୁବାଦ କରାଯାଇଛି । ଆଲେକ୍‌ଜାଣ୍ଡର ପୋପ୍‌ଙ୍କ 'ୟୁନିଭରସାଲ ପ୍ରେୟାର' କବିତାଟି 'ବିଶ୍ୱଜନୀନ ସ୍ତବ' ନାମରେ ଶଙ୍କରାଭରଣ ରାଗରେ ଓଡ଼ିଆକୁ ଅନୂଦିତ ହୋଇଅଛି । ଆମେରିକୀୟ କବି ଏଡ୍‌ୱିନ ମାର୍କହାମ୍‌ଙ୍କ 'ଦି ମ୍ୟାନ ଉଇଥ ଦି ହୋ' କବିତା 'ଜାଗ୍ରତ କୃଷିବଳ' ନାମରେ ରାଗ ଚୋଖିରେ ଅନୂଦିତ ହୋଇଅଛି । ଫରାସି କବି ଫ୍ରାଙ୍କୋଭିଲନଙ୍କ କବିତାର ଇଂରାଜୀ ଅନୁବାଦର ଓଡ଼ିଆ ଅନୁବାଦ 'ପ୍ରେମ-ପାଦପ' ନାମରେ ରାଗ କଳହଂସ କେଦାର ରାଗରେ ଅନୁବାଦ କରାଯାଇଛି । ଇଟାଲୀୟ କବି ପେଟ୍ରାର୍କଙ୍କ ରଚିତ 'ସନେଟସ୍ ଅନ୍ ଦି ଡେଥ୍ ଅଫ୍ ମାଡ଼ୋନା ଲୋରା' କବିତାଟି 'ଭାବିନୀ-ବିୟୋଗ' ନାମରେ ରାଗ କାମୋଦୀରେ ଅନୂଦିତ ହୋଇଅଛି । ଏହି ଅନୁବାଦଗୁଡ଼ିକୁ ସୁଠିଲ ଅନୁବାଦ ବୋଲି କୁହାଯାଇ ପାରେ, କାରଣ ବିଚ୍ଛନ୍ଦଚରଣଙ୍କ ପ୍ରତିଭା ସ୍ପର୍ଶରେ ପାଶ୍ଚାତ୍ୟଦେଶୀୟ ଏହି କବିତାଗୁଡ଼ିକ ଓଡ଼ିଆ ଭାଷାରେ ପୁନର୍ଜନ୍ମ ଲାଭ କରିଥିଲା ପରି ମନେହୁଏ । ଏହି ଅନୁବାଦ ଦ୍ୱାରା ବିଚ୍ଛନ୍ଦଚରଣ ପ୍ରମାଣ କରିଦେଲେ ଯେ ସାହିତ୍ୟ ଫ୍ରାନ୍‌ସର ହେଉ ଅଥବା ଇଟାଲିର ହେଉ କିମ୍ବା ଆମେରିକା ଓ ଇଂଲଣ୍ଡର ହେଉ, ତହିଁରେ ଯଦି ସାର୍ବଜନୀନ ଉପାଦାନ ନିହିତ ଅଛି ତେବେ ତାହା ଅନାୟାସରେ ପୃଥିବୀର ଯେକୌଣସି ଭାଷାରେ ଅନୁବାଦ କରାଗଲେ ବିଶ୍ୱସାହିତ୍ୟରେ ହେବ

ଆଦାନପ୍ରଦାନର ଦ୍ୱାର ଉନ୍ମୁକ୍ତ ହୋଇଯିବ । ଏହି ଭଳି ବହୁମୁଖୀ ବା ସାଂସ୍କୃତିକ ସଂଳାପ ପାଇଁ ବିଚ୍ଛନ୍ଦଚରଣ ଉତ୍ସୁକ ଥିଲେ । ଓଡ଼ିଆ ଭାଷା, ଓଡ଼ିଆ ଜାତୀୟତାର ନିଜସ୍ୱ ସାମର୍ଥ୍ୟ ବଳରେ ବିଶ୍ୱ-ଭାବନା ଓଡ଼ିଆ ସାହିତ୍ୟର ଅଙ୍ଗୀଭୂତ ହେବା ଯେ ସମ୍ଭବ ତାହା ଆଉ ସନ୍ଦେହର ବସ୍ତୁ ହୋଇ ରହିଲା ନାହିଁ ।

ଇଂରାଜୀରୁ ଓଡ଼ିଆକୁ ଅନୁବାଦ କରିବା ସଙ୍ଗେ ସଙ୍ଗେ ବିଚ୍ଛନ୍ଦଚରଣ ସଂସ୍କୃତ ଓ ହିନ୍ଦୀ ସାହିତ୍ୟର ବିଶିଷ୍ଟ କବିତାମାନଙ୍କୁ ଓଡ଼ିଆରେ ଅନୁବାଦ କରି ନମୁନାମାନ ଉପସ୍ଥାପନ କରି ଯାଇଅଛନ୍ତି । ମାଘଙ୍କ କୃତ ଶିଶୁପାଳ ବଧ କାବ୍ୟର ଅଷ୍ଟମ ସର୍ଗର ଉଦ୍ଧୃତିରୁ ସ୍ଥଳିତ ପଦ 'ଯାଦବ ରମଣୀଙ୍କ ଜଳକେଳି ବର୍ଣ୍ଣନା'କୁ ରାଗ ରତ୍ନାକରରେ ସେ ଅନୁବାଦ କରିଛନ୍ତି । ହିନ୍ଦୀ ସାହିତ୍ୟରୁ ସନ୍ଥ ତୁଳସୀ ଦାସଙ୍କ ଗୀତାବଳୀରୁ ଶ୍ରୀରାମ ରୂପ ବର୍ଣ୍ଣନା ରାଗ ଚୋଖିରେ ଏବଂ ସୁରଦାସଙ୍କ ବିନୟାବଳୀକୁ ଆଷାଢ଼ ଶୁକ୍ଳ ରାଗରେ ଅନୁବାଦ କରିଛନ୍ତି ବିଚ୍ଛନ୍ଦଚରଣ । ଏ ସବୁ ଅନୁବାଦ ନମୁନା ରୂପରେ କଳିଙ୍ଗ ଭାରତୀ ସୋଭେନିରର ବିଶ୍ୱ-ସାହିତ୍ୟ-ସୌରଭ ବିଭାଗରେ ସନ୍ନିବେଶିତ ହୋଇଅଛି ।

ସଂସ୍କୃତ ସାହିତ୍ୟର ଏକ ଉଜ୍ଜ୍ୱଳରତ୍ନ 'ଅମରୁ ଶତକ'କୁ ଓଡ଼ିଆରେ ଅନୁବାଦ କରି ପ୍ରକାଶୋନ୍ମୁଖ ଅବସ୍ଥାରେ ରଖିଥିଲେ ବିଚ୍ଛନ୍ଦଚରଣ । କିନ୍ତୁ ଦୈବ ବିଧାନରୁ ସେ ଗ୍ରନ୍ଥଟି ଦିବାଲୋକ ଦେଖି ପାରିବାର ଆଶା କ୍ଷୀଣ ବୋଲି ବୋଧ ହେଉଅଛି । ହିନ୍ଦୀ ସାହିତ୍ୟର ପ୍ରମୁଖ ଭକ୍ତଗ୍ରନ୍ଥ, ସନ୍ଥ ତୁଳସୀ ଦାସଙ୍କ ରଚିତ ଶ୍ରୀରାମ ଚରିତ ମାନସ' ର ବାଳକାଣ୍ଡକୁ ନବାକ୍ଷରୀ (ଭାଗବତ ବୃତ୍ତ) ରେ ଅନୁବାଦ କରି ବିଚ୍ଛନ୍ଦଚରଣ ସମସ୍ତ ଗ୍ରନ୍ଥର ଅନୁବାଦ ଲାଗି ଆଶା ପୋଷଣ କରିଥିଲେ । କିନ୍ତୁ ସେ ଆଶା ଅପୂରଣ ରହିଗଲା । ସନ୍ଥ ତୁଳସୀ ଦାସଙ୍କ ଅନ୍ୟତମ କୃତି 'ବିନୟ ପତ୍ରିକା'ର ଛନ୍ଦୋମୟ ଓଡ଼ିଆ ଅନୁବାଦ ସମାପ୍ତ କରି ଗ୍ରନ୍ଥ-ପ୍ରକାଶ ଲାଗି ସେ ଆଗ୍ରହୀ ଥିଲେ । କିନ୍ତୁ ସେହି ଗ୍ରନ୍ଥଟି ଏବେ ମଧ୍ୟ ପ୍ରକାଶିତ ହୋଇ ପାରିନାହିଁ ।

ଅନୁବାଦ କାର୍ଯ୍ୟରେ ଦକ୍ଷତା ଅର୍ଜନ କରିବା ପାଇଁ ଅଭିଳାଷୀ ଛାତ୍ରମାନଙ୍କ ପାଇଁ 'ହଣ୍ଡ୍ରେଡ୍ ଆଣ୍ଡ୍ ଓ୍ୱାନ୍ ପ୍ୟାସେଜେସ୍ ଫର୍ ଟ୍ରାନ୍ସ୍‌ଲେସନ' ନାମକ ଏକ ଉପାଦେୟ ଗ୍ରନ୍ଥ ସେ ରଚନା କରିଥିଲେ । ଏଥିରେ ସୁନିର୍ବାଚିତ ଏକଶହ ଏକ ପରିଚ୍ଛେଦ ଓଡ଼ିଆ ଗଦ୍ୟ ଓ ତାହାର ଅନୁରୂପ ଇଂରାଜୀ ଅନୁବାଦ ପ୍ରକାଶିତ ହୋଇଥିଲା । ଛାତ୍ରମାନଙ୍କ ଭାଷାଜ୍ଞାନର ପରିମାର୍ଜନା ନିମିତ୍ତ ସେ ଗୋଟିଏ ଇଂରାଜୀ

ବ୍ୟାକରଣ ଏବଂ ଗୋଟିଏ ଓଡ଼ିଆ ବ୍ୟାକରଣ ମଧ୍ଯ ପ୍ରଣୟନ ଓ ପ୍ରକାଶ କରିଥିଲେ । କିନ୍ତୁ ଏହି ଗ୍ରନ୍ଥମାନ ଦୁଷ୍ପ୍ରାପ୍ୟ ହୋଇଗଲେଣି ।

ତରୁଣମାନଙ୍କ ମଧ୍ୟରେ ଶକ୍ତିଧର ଅନୁବାଦକମାନଙ୍କ ଆବିର୍ଭାବ ଘଟିଲେ ଜାତୀୟ ସାହିତ୍ୟର ଆଶୁ ବିକାଶ ସମ୍ଭବ ହେବ, ଏହା ବିଚ୍ଛନ୍ଦଚରଣ ଅନୁଭବ କରୁଥିଲେ । ସେଥିପାଇଁ ଉପଯୁକ୍ତ ପ୍ରତିଭା ଓ ଉଦ୍ଦନୁସାରୀ ସାଧନା ଅବ୍ୟାହତ ରଖିବା ପାଇଁ ସେ ଯୁବଗୋଷ୍ଠୀକୁ ଉଦ୍‌ବୋଧିତ କରୁଥିଲେ । ସାହିତ୍ୟ, ଦର୍ଶନ, ବିଜ୍ଞାନ, ଆଇନ, ବାଣିଜ୍ୟ ସବୁ କ୍ଷେତ୍ରରେ ଅନୁବାଦ କାର୍ଯ୍ୟର ଆବଶ୍ୟକତା ରହିଛି ଓ ବ୍ୟକ୍ତିଗତ ତଥା ସାମୂହିକ ପ୍ରଚେଷ୍ଟା ବଳରେ ସେହି ଆବଶ୍ୟକତାର ପୂର୍ତ୍ତି ଘଟାଇବା ପାଇଁ ବିଚ୍ଛନ୍ଦଚରଣ ଉପଦେଶ ଦେଇ ଯାଇଛନ୍ତି ।



# ଉପସଂହାର

ଜୀବନ-ସଂଗ୍ରାମରେ ଅପ୍ରତିହତ ଯୋଦ୍ଧା ବିଚ୍ଛନ୍ଦଚରଣ ଘୋର ଆର୍ଥିକ ଅନାଟନ, ଝଞ୍ଜାକ୍ଷୁବ୍ଧ ଭଗ୍ନ ଶାରୀରିକ ଅସାମର୍ଥ୍ୟ, ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରତିକୂଳତା, ତଥା ସର୍ବୋପରି ଆଦର୍ଶ-ନିଷ୍ଠିତ ମନର ସାଲିସ ହୀନ ଅନମନୀୟତା ଯେଉଁ ବିଘ୍ନ ଥିଲେ, ଖୁବ୍ ସାର୍ଥକତାର ସହିତ ବହି ପାରିଥିଲେ । ସଂଗ୍ରାମ କରି ମଧ୍ୟ ବଞ୍ଚିହୁଏ, ଏହା ଥିଲା ତାଙ୍କ ଅକୁତୋଭୟ ବ୍ୟକ୍ତିତ୍ୱର ଦୃଢ଼ ସ୍ୱର । ଆଦର୍ଶବାଦର ଜୟ ପତାକା ଯେଉଁ ସବୁ କ୍ଷେତ୍ରରେ ସେ ଆଗଭର ହୋଇ ବୁଲିଥିଲେ । ବ୍ୟକ୍ତିଗତ ଲାଭାଲାଭ କିମ୍ବା ଜୟପରାଜୟ ର ବିଷୟର ତାଙ୍କ ପାଖରେ ଥିଲା ଗୌଣ । ଆଜନ୍ମରୁ ଭାଗ୍ୟ ସହିତ ସଂଗ୍ରାମ କରିବା ପାଇଁ ସତେ ଯେପରି ସେ ଆହ୍ୱାନ ପାଇଥିଲେ ।

ପ୍ରତିଭା ଥିଲା ତାଙ୍କ ସହଜାତ ସମ୍ପଦ । କିନ୍ତୁ ସେ ପ୍ରତିଭା ହୁଏତ ବିମେଲି ପରି ଝଡ଼ି ପଡ଼ିଥାନ୍ତା, କିନ୍ତୁ ଅଦ୍ଭୁତ ମନବଳ ଓ ଅସାଧାରଣ ସାଧନା ବଳରେ ସେ ତାହା ହେବାକୁ ଦେଲେ ନାହିଁ । ଉଚ୍ଚାକାଙ୍‌କ୍ଷା ଦ୍ୱାରା ନିତ୍ୟ ଅନୁପ୍ରେରିତ ହୋଇ ଶାଲତରୁ ଅଙ୍କୁର ପରି ସେ ବିଭିନ୍ନ ସ୍ତରର ପ୍ରତିବନ୍ଧକତାକୁ ଭେଦ କରି ଉଠିଲେ । ସେ ନିଜକୁ ଏକ ଅଜ୍ଞାତ ଆଗ୍ନେୟଗିରିର ବିସ୍ଫୋରଣ ବୋଲି ମନେ କରୁଥିଲେ । କେଉଁଠୁ ଏ ବିସ୍ଫୋରଣର ଶକ୍ତିପୁଞ୍ଜ ଆହରିତ ହେଉଛି, ତାହା ସେ ମଧ୍ୟ ନିଜେ ଜାଣି ପାରୁ ନଥିଲେ । କିଏ ତାଙ୍କୁ ଜୀବନରେ ବାଟ କଢ଼ାଇ ନେଉଛି, ତାହା ମଧ୍ୟ ତାଙ୍କୁ ଅଜଣା ଥିଲା । ପରବର୍ତ୍ତୀ ପରିଣତ ଜୀବନରେ ସେ ସେହି ଅଜ୍ଞାତ ଶକ୍ତିକୁ ସର୍ବ-ସମର୍ଥ ପରମେଶ୍ୱର ବୋଲି ଗ୍ରହଣ କରିନେଲେ ।

ଜୀବନର ପ୍ରସ୍ତୁତି ପଥରେ ପ୍ରତିଭା ଓ ସାଧନା ତାଙ୍କର ବିଶ୍ୱସ୍ତ ସହଚର ହୋଇ ରହିଥିଲେ ହେଁ ପ୍ରଣୟଗତ ବିପର୍ଯ୍ୟୟରେ ତାଙ୍କ ଆଶା-ସୌଧ ଧୂଳିସାତ୍ ହୋଇଗଲା । ନିଜର ସକଳ ସାମର୍ଥ୍ୟ ସହିତ ସେ ସ୍ମୃତିଶକ୍ତିକୁ ମଧ୍ୟ ହରାଇ ବସିଲେ । ନିମଗ୍ନ-ଚେତନାର ଅତଳ ଗହ୍ୱରରେ ସେ ନିଜକୁ ସୁଦ୍ଧା ହଜାଇ ଦେଲେ । ଏଇଠାରେ ହୁଏତ ପୂର୍ଣ୍ଣଚ୍ଛେଦ ପଡ଼ିଯାଇଥା'ନ୍ତା, ଚିରକାଳ ଲାଗି ସୂର୍ଯ୍ୟ ଅସ୍ତ ହୋଇଯାଇ-ଥା'ନ୍ତେ । କିନ୍ତୁ ସାର୍ଦ୍ଧ ଏକବର୍ଷ ପରେ ବିଚ୍ଛନ୍ଦଚରଣଙ୍କ ଚେତନା-କେନ୍ଦ୍ରରେ ଆହ

ଏକ ଅଗ୍ନିବମନୀୟ ଶକ୍ତିପୁଞ୍ଜର ସଞ୍ଚାର ହେଲା. ଏକ ନୂତନ ଭବତବ୍ୟାଗର ଦ୍ୱାର ଉନ୍ମୋଚିତ ହେଲା । ପ୍ରଣୟ ପରିଣତ ହେଲା ଦେଶପ୍ରୀତିରେ । ତାଙ୍କ ଅନ୍ତର୍ନିହିତ ସମସ୍ତ ଜାତୀୟ-ଚେତନା, ଜାତୀୟ-ଭାବନା ଓ ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ତପୋମୟ ଦେଶସେବା ଓ ଦେଶଭକ୍ତିର ସଂସ୍ପର୍ଶ ଏକତ୍ର ଜାଗରୂକ ହୋଇ ଉଠିଲା ! ବିଚ୍ଛନ୍ଦଚରଣ ଲେଖିଲେ, **My motherland to me is 'Dearer now even than the dearest I have lost, whose memory sweet, my widowed heart bedews with tears'** ପ୍ରାଣ-ପ୍ରିୟା ପ୍ରିୟତମା ଠାରୁ ପ୍ରିୟତର ବୋଧ ହେଲା ଜନ୍ମଭୂମି । ବିଚ୍ଛନ୍ଦଚରଣଙ୍କର ସେତ ଚରିତ୍ରଗତ ବିହ୍ୱଳତା ରୂପକ ଅକ୍ଷମତା ନଥାନ୍ତା, ତେବେ ତାଙ୍କ ପରି ଅଗ୍ନିମୟ ବ୍ୟକ୍ତିତ୍ୱ ଓ ବୀର ପୁରୁଷର କର୍ମଭୂମି ହୋଇଥାନ୍ତା ସକ୍ରିୟ ରାଜନୀତି । ସ୍ୱାଧୀନତା ସଂଗ୍ରାମରେ ଜଡ଼ିତ ହୋଇ ସେ ବିଦ୍ୟା-ପ୍ରତିଷ୍ଠାନ ବର୍ଜନ କଲେ ସତ, କିନ୍ତୁ ଜନ୍ମଗତ ଶାରୀରିକ ଅସାମର୍ଥ୍ୟରୁ ସକ୍ରିୟ ରାଜନୀତିଠାରୁ ଦୂରେଇ ଗଲେ । ଜଣାଗଲା, ଯେପରି ସେଥିପାଇଁ ସେ ଉଦ୍ଦିଷ୍ଟ ନଥିଲେ । କିନ୍ତୁ ତାଙ୍କ ଜୀବନରେ ଆରମ୍ଭ ହେଲା, 'ସାହିତ୍ୟ ପାଇଁ ସଂଗ୍ରାମ' । ଓଡ଼ିଶାର କଳା-ସଙ୍ଗୀତ-ମୟ ଜାତୀୟ ସଂସ୍କୃତିର ସୁରକ୍ଷା ଓ ବିକାଶ ନିମିତ୍ତ ଅତନ୍ଦ୍ର ସଂଗ୍ରାମରେ ଲିପ୍ତ ରହିଲେ ବିଚ୍ଛନ୍ଦଚରଣ ।

ଶିକ୍ଷକତା, ଓକିଲାତି, ସାମ୍ବାଦିକତା ଏବଂ ସରକାରୀ ଚାକିରୀକୁ କୁଟୁମ୍ବ ଭରଣ ପୋଷଣର ପନ୍ଥାରୂପେ ଗ୍ରହଣ କରି ଅଲକ୍ଲାନ୍ତ ଜୀବନ-ସଂଗ୍ରାମରେ ଆଗେଇ ଚାଲୁଥିଲା ବେଳେ ଅଖଣ୍ଡିତ ଭାବରେ ସାହିତ୍ୟ ପାଇଁ ସଂଗ୍ରାମକୁ ସେ ଉଦ୍ଦୀପ୍ତ କରି ରଖିଥିଲେ । ଓଲସିଂହରେ ଶିକ୍ଷକ ଓ ପୋଥିସଂଗ୍ରାହକ, କଟକରେ ପ୍ରାଚୀ ପତ୍ରିକା ଓ ପ୍ରାଚୀ ସମିତିର ସଂପାଦକ ଓ ପରିଚାଳକ, ଉତ୍କଳ ସାହିତ୍ୟ ସମାଜର ଜଣେ ବରିଷ୍ଠ କର୍ମକର୍ତ୍ତା ଓ ସର୍ବୋପରି କଳିଙ୍ଗଭାରତୀ ଓ ଉତ୍କଳ ଯୁବ ସାହିତ୍ୟ ସମାଜର ପ୍ରତିଷ୍ଠାତା-ସଭାପତି ଏବଂ କଳିଙ୍ଗ ଭାରତୀସାଧକ ଗୋଷ୍ଠୀର ଗୁରୁଦେବ ଭାବରେ ସାହିତ୍ୟ ପାଇଁ ସେ ଯେଉଁ ସଂଗ୍ରାମ ଚଳାଇଲେ, ତାହା ତାଙ୍କ ଜୀବନ-ସଂଗ୍ରାମ ସହିତ ଏକୀଭୂତ ହୋଇଗଲା । କଳିଙ୍ଗଭାରତୀ ସାଧକ ଗୋଷ୍ଠୀ ନାମରେ ପରିଚିତ ଓଡ଼ିଶା ବ୍ୟାପୀ ଏକ ବଳିଷ୍ଠ ଓ ସୁସଂହତ ଯୁବ ସଂପ୍ରଦାୟର ଅପ୍ରତିଦ୍ୱନ୍ଦୀ ଅଧିନାୟକ ଭାବରେ ଦୀର୍ଘ ଅଠର ବର୍ଷକାଳ ସେ ଯେଉଁ ନେତୃତ୍ୱ ଦେଇଗଲେ, ତାହା ଓଡ଼ିଶାର ସାଂସ୍କୃତିକ ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ।

ବିଚ୍ଛନ୍ଦଚରଣଙ୍କ ଦେଶାତ୍ମବୋଧ ଓ ସ୍ୱଦେଶ-ପ୍ରୀତି ଥିଲା ସଂକ୍ରାମକ । ତାଙ୍କ ସାନିଧ୍ୟକୁ ଆସିଲେ ପ୍ରତ୍ୟେକ ବ୍ୟକ୍ତି ସ୍ୱଦେଶ-ପ୍ରୀତିରେ ଉଦ୍‌ବୋଧିତ ହୋଇ

ଯାଉଥିଲେ । ସତେ ଯେପରି ତାଙ୍କ ବ୍ୟକ୍ତିତ୍ୱରେ ଦେଶ-ପ୍ରୀତିର ଦାବାନଳ ଜଳୁଥିଲା । କିନ୍ତୁ ତାଙ୍କଠାରେ ଦେଶପ୍ରୀତି ଅପେକ୍ଷା ଅଧିକତର ଭାବରେ ପ୍ରକଟିତ ହେଲା ଭଗବତ୍-ପ୍ରୀତି । ଭଗବାନଙ୍କ ଠାରେ ସେ ସମସ୍ତ କର୍ମ ସମର୍ପଣ କରି ଦେଇ ଭଗବତ୍‌ଧାମ ପ୍ରାପ୍ତି ପାଇଁ ଅନ୍ତରର ଗଭୀରତମ ପ୍ରଦେଶରୁ ଆକୁତି ପ୍ରକାଶ କରୁଥିଲେ ।

୧୯୭୧ ମସିହା ଜାନୁୟାରୀ ୧୪ ତାରିଖରେ କଟକ ବଡ଼ଡାକ୍ତରଖାନାରେ ବିଚ୍ଛନ୍ଦଚରଣ ଇହଲୀଳା ସାଙ୍ଗ କଲେ । ତାଙ୍କର ପ୍ରିୟଶିଷ୍ୟମାନଙ୍କ ମଧ୍ୟରୁ ଡକ୍ଟର ଶ୍ରୀ ଭବପ୍ରସାଦ ମିଶ୍ର ଓ ଡକ୍ଟର ଶ୍ରୀ ଶୈଳେଶ୍ୱର ନନ୍ଦ ଗୁରୁଦେବଙ୍କ ଚିକିତ୍ସା ଓ ପରିଚର୍ଯ୍ୟାରେ ମନପ୍ରାଣ ଢାଳି ଦେଇଥିଲେ । ଶ୍ରୀ ହୃଦାନନ୍ଦ ସ୍ୱାଇଁ ଓ ଶ୍ରୀ ରଜତ କୁମାର କର ଉଭୟ ଅଧ୍ୟାପନା କାର୍ଯ୍ୟରେ ଜୟପୁର (କୋରାପୁଟ)ରେ ଅବସ୍ଥାପିତ ହୋଇଥାନ୍ତି । ପତ୍ର ମାଧ୍ୟମରେ ସେମାନେ ଡକ୍ଟର ଭବ ପ୍ରସାଦ ମିଶ୍ରଙ୍କ ସହିତ ଦୈନନ୍ଦିନ ଯୋଗସୂତ୍ର ରକ୍ଷା କରିଥାନ୍ତି ଓ ଗୁରୁଦେବଙ୍କ ସ୍ୱାସ୍ଥ୍ୟ ବିଷୟରେ ସମ୍ବାଦ ରଖିଥାନ୍ତି । ଦିନେ ଡକ୍ଟର ଭବ ପ୍ରସାଦଙ୍କ ଠାରୁ ଚିଠି ମିଳିଲା ଯେ ଖୁବ୍ ହେଲେ ଆଉ ଚବିଶ ଘଣ୍ଟା ମଧ୍ୟରେ ଗୁରୁଦେବ ଶରୀର ତ୍ୟାଗ କରି ବାହାରିଯିବେ । ଠିକ୍ ଚବିଶ ଘଣ୍ଟା ନ ପୂରୁଣୁ କଟକ ବେତାର କେନ୍ଦ୍ର ଘୋଷଣା କଲେ ଯେ କଳିଙ୍ଗ-ଭାରତୀ ପ୍ରତିଷ୍ଠାତା ବିଚ୍ଛନ୍ଦଚରଣ ଆଉ ଇହଜଗତରେ ନାହାନ୍ତି । ଓଡ଼ିଶାର ସାହିତ୍ୟ ଆକାଶରୁ ଅକାଳରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଲିଭିଗଲା ।

ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକା ପୃଷ୍ଠାରେ ଏହି ଶୋକସମ୍ବାଦ ପ୍ରସାରିତ ହୋଇଗଲା । 'କଳିଙ୍ଗ' ପତ୍ରିକାର ସମ୍ପାଦକ ଲେଖିଲେ, 'ଗଭୀର ଦୁଃଖର ବିଷୟ ଯେ ଗତ ୧୪ ତାରିଖରେ କବି ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ବିୟୋଗ ହୋଇ ଯାଇଛି" । "ଓଡ଼ିଆ ସାହିତ୍ୟର ଉନ୍ନତି ତାଙ୍କର ଆନ୍ତରିକ କାମନା ଥିଲା । ତାଙ୍କର ବିୟୋଗରେ ଓଡ଼ିଆ ସାହିତ୍ୟର ଜଣେ ନିଷ୍ଠାପର ସାଧକଙ୍କ ସ୍ଥାନ ଅପୂର୍ଣ୍ଣ ରହିଲା । ସେ ଯେଉଁ ଧାରାର ପ୍ରବର୍ତ୍ତନ ଲାଗି ଗଭୀର ଚେଷ୍ଟା ଚଳାଉଥିଲେ, ତାଙ୍କର ବିୟୋଗରେ ତାହାର ଅବସାନ ଘଟିଲା ବୋଲି ମନେହୁଏ ।" "ଡଗର" ପତ୍ରିକା ସମ୍ପାଦକ ଲେଖିଥିଲେ, 'ପ୍ରାଚୀ ଆଜି ପାଶ୍ଚାତ୍ୟରେ ପରିଣତ ହୋଇଥାଇ ପାରେ; କିନ୍ତୁ ବିଚ୍ଛନ୍ଦଙ୍କ ବିଶେଷ ଛନ୍ଦର ଝଙ୍କାର ଓଡ଼ିଆ ସାହିତ୍ୟରେ କେବେ ହେଲେ ନିସ୍ତବ୍ଧ ହୋଇନାହିଁ । ନୂତନ ନିୟମରେ ନହେଲେ ହେଁ ନୂତନର ନିୟାମକ ଭାବରେ ତାଙ୍କର ଦୁର୍ଦ୍ଦମନୀୟ ସଂକଳ୍ପ କଲ୍ପେ କଲ୍ପେ ଜାତିର ସାହିତ୍ୟ ଓ ସଂସ୍କୃତିକୁ ଉଜ୍ଜୀବିତ କରି ରଖିବ ।"

ସେ ପୁଣି ଲେଖିଛନ୍ତି, 'ଉଚ୍ଚ ଶିକ୍ଷାଲାଭ କରି ବହୁ ବ୍ୟକ୍ତି ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନକୁ ଜଳାଞ୍ଜଳି ଦେଇ ଦେଶର ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ମାତ୍ର ସାହିତ୍ୟର ଉନ୍ନତି କଳ୍ପେ ଜାଣିଶୁଣି ଓଡ଼ିଶା ଦେଶରେ କବି-ଲେଖକର ଦୁର୍ଭାଗ୍ୟ ବରଣ କରିବାପାଇଁ ଭବିଷ୍ୟତର ଚିନ୍ତା ନକରି କେହି ଯଦି ସାହିତ୍ୟ-ପୀଠରେ ଆତ୍ମବଳି ଦେଇଥାଏ, ସେ ହେଉଛନ୍ତି ବିଚ୍ଛନ୍ଦଚରଣ । ସାହିତ୍ୟ-ଜଗତରେ ସେ ଅନ୍ୟତମ ଶହୀଦ୍ ।"

"ନବଜୀବନ" ପତ୍ରିକାର ସମ୍ବାଦ ଓ ସଙ୍କେତ ସ୍ତମ୍ଭରେ ସ୍ୱର୍ଗତ ଆତ୍ମାପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ସମ୍ପାଦକ ଲେଖିଥିଲେ, "ବିଚ୍ଛନ୍ଦବାବୁଙ୍କ ମନର ବଳ ଆମ ଯୁବକମାନଙ୍କର ସମ୍ବଳ ହେଉ ।"

ବିଚ୍ଛନ୍ଦଚରଣଙ୍କ ସ୍ୱର୍ଗାରୋହଣର ଅବ୍ୟବହିତ ପରେ ୧୯୬୨ ମସିହାରେ ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର ଆନୁକୂଲ୍ୟରେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ଲେଖକମାନଙ୍କ ପ୍ରବନ୍ଧ ଓ ଶ୍ରଦ୍ଧାଞ୍ଜଳି ସମନ୍ୱିତ ହୋଇ 'ବିଚ୍ଛନ୍ଦ ସ୍ମରଣିକା' ପ୍ରକାଶିତ ହେଲା । ଏହି ମନୋଜ୍ଞ ସଂକଳନର ସମ୍ପାଦନା କରିଥିଲେ ଶ୍ରୀ ମୁରାରି ମୋହନ ଜେନା । ଗ୍ରନ୍ଥ ପ୍ରକାଶନର ଆର୍ଥିକ ଭାର ବହନ କରିଥିଲେ ପଣ୍ଡିତ ଅନସୂୟା ପ୍ରସାଦ ପାଠକ ।

୧୯୭୨ ମସିହାରେ କଳିଙ୍ଗଭାରତୀ ଅନୁଷ୍ଠାନ ପକ୍ଷରୁ 'ସ୍ମୃତିତର୍ପଣ' ନାମକ ପୁସ୍ତିକା ପ୍ରକାଶ ଲାଭ କରିଥିଲା । ଏଥିରେ ବିଚ୍ଛନ୍ଦଚରଣଙ୍କ ଜୀବନୀ ଓ ବାଣୀ ସ୍ଥାନ ପାଇଛି । ଜୀବନୀ ଓ ବାଣୀ ସଂକଳନ କରିଥିଲେ ଶ୍ରୀ ହୃଦାନନ୍ଦ ରାୟ । ବିଚ୍ଛନ୍ଦଚରଣଙ୍କ ଜନ୍ମୋତ୍ସବ ଉପଲକ୍ଷେ ଏହି ପୁସ୍ତିକାଟି ବିନା ମୂଲ୍ୟରେ ବିତରିତ ହୋଇଥିଲା ।

କଳିଙ୍ଗଭାରତୀ ଅନୁଷ୍ଠାନ ତରଫରୁ ୧୯୭୭ ମସିହାରେ କଳିଙ୍ଗଭାରତୀ ଗ୍ରନ୍ଥମାଳାର ଦଶମ ପୁଷ୍ପ ଭାବରେ ଆତ୍ମପ୍ରକାଶ କଲା 'କଳିଙ୍ଗପ୍ରାଣ ବିଚ୍ଛନ୍ଦଚରଣ" । ଏହାର ରୁଚିବନ୍ତ ସମ୍ପାଦନା କରିଛନ୍ତି ଡକ୍ଟର ଶୈଳେଶ୍ୱର ନନ୍ଦ । ବିଚ୍ଛନ୍ଦଚରଣଙ୍କ ଆତ୍ମଜୀବନୀ ଚରିତ "ସାହିତ୍ୟ ପାଇଁ ସଂଗ୍ରାମ" ଏଥିରେ ସନ୍ନିବେଶିତ । ୧୯୩୧ ମସିହା ପର୍ଯ୍ୟନ୍ତ ଠିକ୍ ଅର୍ଦ୍ଧେକ ଜୀବନ କାଳର ଆଲେଖ୍ୟ ଏଥିରେ ଲିପିବଦ୍ଧ ହୋଇଅଛି । ୧୯୫୯ ମସିହାରେ ବିଚ୍ଛନ୍ଦଚରଣ ଏହି ମୂଲ୍ୟବାନ ଲେଖ୍ୟ-ପ୍ରମାଣ (ଦଲିଲ) ପ୍ରସ୍ତୁତ କରିଥିଲେ ।

ବିଚ୍ଛନ୍ଦଚରଣଙ୍କ ଶେଷକୃତ୍ୟ ସମ୍ପନ୍ନ ହେଲା ସତୀଚଉରା ଶ୍ମଶାନରେ । ତାଙ୍କ ମରଶରୀରକୁ ଅନ୍ତିମ ସମ୍ମାନ ଜଣାଇବାକୁ ଉପସ୍ଥିତ ଥିଲେ ପ୍ରଭକ୍ସନ୍

ଅଫିସର ଶ୍ରୀ ପରମାନନ୍ଦ ମହାନ୍ତି, କଳିଙ୍ଗ ପତ୍ରିକା ସଂପାଦକ ଶ୍ରୀ ମନମୋହନ ମିଶ୍ର, ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଶ୍ରୀ ବିଚିତ୍ରାନନ୍ଦ କର, ଡକ୍ଟର ଶ୍ରୀ ମୁରଳୀ ମୋହନ ଜେନା, ଡାକ୍ତର ଶ୍ରୀମତୀ ସରସ୍ୱତୀ ଦେବୀ ପ୍ରମୁଖ ସାହିତ୍ୟିକ ବୃନ୍ଦ, ରଷ୍ଟ୍ରଭାଷା ପ୍ରେସ୍‌ର ପରିଚାଳକ, କର୍ମୀଗଣ ଏବଂ 'ଗୁରୁଦେବଙ୍କ' ଏକାନ୍ତ ଅନୁରକ୍ତ କଳିଙ୍ଗ-ଭାରତୀ ସାଧକ ଗୋଷ୍ଠୀର ସଭ୍ୟମାନେ । କଳିଙ୍ଗଭାରତୀର ସଙ୍ଗଠନ-ସମ୍ପାଦକ ଡକ୍ଟର ଶ୍ରୀ କବିପ୍ରସାଦ ମିଶ୍ର ସେହି ଦୁଃଖଦ ରାତ୍ରିର ଅନୁଭୂତ ଲିପିବଦ୍ଧ କରିଛନ୍ତି । 'ସେ ଦିନର ରାତି' ଶୀର୍ଷକ ସେହି ଲେଖାଟି ପ୍ରକାଶିତ ହୋଇଛି ବିଚ୍ଛନ୍ଦ-ସ୍ମରଣିକା ଗ୍ରନ୍ଥରେ । ସେ ଲେଖିଛନ୍ତି, 'କାହାରି ମୁହଁରେ ପଦେ ହେଲେ କଥା ନାହିଁ । ସତେ ଯେପରି ସମସ୍ତେ ଜଡ଼, ଆଗରେ ସ୍ୱର୍ଗତ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସ୍ମୃତିସ୍ତମ୍ଭ । ସେ ମଧ୍ୟ ଆଜି ପଥର । ଉନ୍ମୁକ୍ତ 'ଭାଷାକୋଷ' ବି ନୀରବ । ଏହି ଭୟାବହ ନୀରବତା ଓ ନିଃଶବ୍ଦତାରେ ଜଣା ପଡୁଥିଲା, ବିଚ୍ଛନ୍ଦବାବୁଙ୍କ ମରଣଟିର ନୁହେଁ, ଗୋଟାଏ ଯୁଗର ଅତୁଟ ଓ ଅସମାପ୍ତ ସଂଗ୍ରାମ ।"

ବିଚ୍ଛନ୍ଦଚରଣ ସ୍ମୃତିରକ୍ଷା କମିଟି ଉତ୍କଳ-ସାହିତ୍ୟ ସମାଜର ଶ୍ରୀରାମଚନ୍ଦ୍ର ଭବନରେ ତାଙ୍କ ତୈଳଚିତ୍ର-ପଟ୍ଟ ଉନ୍ମୋଚିତ ହୋଇ ସଂସ୍ଥାପିତ ହୋଇଅଛି । ବର୍ଷକୁ ବର୍ଷ କଳିଙ୍ଗଭାରତୀ ଭଞ୍ଜ-ମଣ୍ଡପଠାରେ ତାଙ୍କ ଜନ୍ମଦିବସ ଜାନୁୟାରୀ ୧୪ ତାରିଖରେ ବିଚ୍ଛନ୍ଦ-ଜୟନ୍ତୀ ପାଳନ କରାଯାଉଛି । ଏହି ଦିବସକୁ ଓଡ଼ିଶୀ-ନୃତ୍ୟ-ସଙ୍ଗୀତ ଦିବସ ରୂପେ ପାଳନ କରିବାପାଇଁ ଘୋଷଣା କରାଯାଇଛି । ୧୯୬୭ ମସିହାରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏହି ଦିବସରେ ଅଧିନାୟକତ୍ୱ କରିଥିଲେ ଓ ସେ ଉତ୍ସବ ଶ୍ରୀରାମଚନ୍ଦ୍ର ଭବନରେ କଳିଙ୍ଗ ଭାରତୀ ତରଫରୁ ପାଳିତ ହୋଇଥିଲା । ଓଡ଼ିଶୀ-ନୃତ୍ୟ, ଓଡ଼ିଶୀ-ସଙ୍ଗୀତର ସୁରକ୍ଷା ଓ ବିକାଶପାଇଁ ଜନ-ଚେତନା ଜାଗ୍ରତ କରିବା ହେଉଛି ଏହି ଦିବସ ପାଳନର ଲକ୍ଷ୍ୟ ।

ବିଚ୍ଛନ୍ଦଚରଣଙ୍କ ଆବକ୍ଷ ପ୍ରତିମୂର୍ତ୍ତି କଳିଙ୍ଗଭାରତୀ ଅନୁଷ୍ଠାନରେ ସଂରକ୍ଷିତ ହୋଇଅଛି, ଏବଂ ପ୍ରତିବର୍ଷ 'ଭଞ୍ଜ-ଜୟନ୍ତୀ' ଉତ୍ସବରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିମୂର୍ତ୍ତି ସହିତ ତାହା ସଭା-ମଞ୍ଚ ମଣ୍ଡନ କରିଥାଏ । ଆଦର୍ଶନିଷ୍ଠା-ପ୍ରାବଲ୍ୟରୁ କଳିଙ୍ଗଭାରତୀ ସାଧକ ଗୋଷ୍ଠୀର ପ୍ରତ୍ୟେକ ସଭ୍ୟ ନିଜକୁ ବିଚ୍ଛନ୍ଦଚରଣଙ୍କର ଏକ ଚଳମାନ ସ୍ମୃତିସ୍ତମ୍ଭ ବୋଲି ମଣିଥାନ୍ତି ଏବଂ ଓଡ଼ିଶାର ଯେଉଁଠି ଭଞ୍ଜ-ଜୟନ୍ତୀ ମହୋତ୍ସବ ପାଳିତ ହୁଏ, ସେଠାରେ ବିଚ୍ଛନ୍ଦଚରଣଙ୍କ ନାମକୁ ସକୃତଜ୍ଞ ଅନୁରକ୍ତିରେ ସ୍ମରଣ କରାଯାଇଥାଏ । 'ଭଞ୍ଜ-ଜୟନ୍ତୀ'ର ଆଦ୍ୟ-ପ୍ରବର୍ତ୍ତକ କଳିଙ୍ଗପ୍ରାଣ ବିଚ୍ଛନ୍ଦଚରଣ ଚିରସ୍ମରଣୀୟ ହୋଇ ରହିଛନ୍ତି ।

●

## ସହାୟକ ଗ୍ରନ୍ଥସୂଚୀ

### (କ) କଳିଙ୍ଗଭାରତୀ ଗ୍ରନ୍ଥମାଳା


୧ । ସାହିତ୍ୟ ପାଇଁ ସଂଗ୍ରାମ, ବିଚ୍ଛନ୍ଦଚରଣଙ୍କ ଆତ୍ମ-ଜୀବନ ଚରିତ । କଳିଙ୍ଗଭାରତୀ ପ୍ରକାଶିତ 'କଳିଙ୍ଗପ୍ରାଣ ବିଚ୍ଛନ୍ଦଚରଣ' ଗ୍ରନ୍ଥରେ ସନ୍ନିବେଶିତ ।

୨ । କବିତା କୁମୁଦ (ବିଚ୍ଛନ୍ଦ ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ), ୧୯୪୬

୩ । ସ୍ୱପ୍ନ-ଭାବନା (ପ୍ରଥମ ବିଳାସ), ବିଚ୍ଛନ୍ଦଚରଣ । ଗ୍ରନ୍ଥମନ୍ଦିର ପୁସ୍ତକ ଭଣ୍ଡାର ପ୍ରକାଶିତ ୧୯୫୯ ।

୪ । ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନ (ଗୀତକଳ୍ପତରୁ ଦ୍ୱିତୀୟ ଶାଖା) ସମ୍ପାଦକ ଓ ପ୍ରକାଶକ ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ, ୧୯୫୬ ।

୫ । ଭଞ୍ଜ-ପ୍ରଭା (କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପ୍ରତିଭାର ବିଶ୍ଳେଷଣ ମୂଳକ ନିବନ୍ଧ ସମୁଚ୍ଚୟ) । ମୁଖ୍ୟ ସମ୍ପାଦକ— ବିଚ୍ଛନ୍ଦଚରଣ ପଟ୍ଟନାୟକ, ୧୯୫୩, ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ-୧୯୨୫ ।

୬ । ଭଞ୍ଜ, ଭଞ୍ଜ-ଜୟନ୍ତୀ ଓ ଓଡ଼ିଶାର ସାଂସ୍କୃତିକ ଇତିହାସ (କଳିଙ୍ଗଭାରତୀ ଭଞ୍ଜ-ଜୟନ୍ତୀ ରୌପ୍ୟ ଜୟନ୍ତୀ ସ୍ମରଣିକା) ୧୯୬୮ ।

୭ । କଳିଙ୍ଗ ପ୍ରାଣ ବିଚ୍ଛନ୍ଦଚରଣ (କଳିଙ୍ଗଭାରତୀ ଗ୍ରନ୍ଥମାଳା ଦଶମ ପୁଷ୍ପ) ୧୯୭୭ ।

୮ । କଳିଙ୍ଗ ଭାରତୀର ସଂକ୍ଷିପ୍ତ ପରିଚୟ (୨୨-୪-୫୫ ତାରିଖରେ ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ସାମ୍ବାଦିକ ସମ୍ମିଳନୀରେ ଦିଆଯାଇଥିବା ଲିଖିତ ଭାଷଣ) ୧୯୫୫ ।

୯ । କବିସମ୍ରାଟ ସ୍ମରଣିକା, ୧୯୫୦ ।

୧୦ । ସ୍ମୃତିତର୍ପଣ (ବିଚ୍ଛନ୍ଦଚରଣଙ୍କ ସଂକ୍ଷିପ୍ତ ଜୀବନୀ ଓ ବାଣୀ ) ୧୯୭୨ ।

୧୧ । କଳିଙ୍ଗଭାରତୀ ଭଞ୍ଜ-ଜୟନ୍ତୀର ପ୍ରଥମ ଦିବସରେ ପ୍ରତିଷ୍ଠାତା— ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ଲିଖିତ ଅଭିଭାଷଣ, ୧୯୫୫, ୧୯୫୬, ୧୯୫୮, ୧୯୫୯, ୧୯୬୦ ।

୧୨ । My Dreams : Bichhanda Charan Pattanaik, Published in the Prachi (Reprinted).

୧୩ । Kavi Samrat Upendra Bhanja Souvenir : (Collection of the English translation of

selections from the poetical fictions of Bhanja) Translated by Sri Bichhanda Charan Pattanaik, Published 1950.

୧୪ । Glimpses into Kavisurya : (A short Collection of English Translations of Kavisurya Baladev Rath's Poems) Translator and Editor Bichhanda Charan Pattanaik, Published-1957.

୧୫ । Kalinga Bharati Souvenir : (Reflecting the Ideals and Achievements of Kalinga Bharati), 1959.

୧୬ । Kalinga, Kavisamrat, Kalinga Bharati : Bichhanda Charan Pattanaik (booklet), 1953.

**(ଗ) ଅନ୍ୟାନ୍ୟ ଗ୍ରନ୍ଥମାଳା :**

୧୭ । ବାଛନ୍ଦ ସ୍ମରଣିକା : ଗ୍ରନ୍ଥଭଷା ପୁସ୍ତକ ଭଣ୍ଡାର ପ୍ରକାଶିତ, ଶ୍ରୀ ମୁରଲୀ ମୋହନ ଜେନାଙ୍କ ଦ୍ୱାରା ସମ୍ପାଦିତ, ୧୯୬୨ ।

୧୮ । ପଣ୍ଡିତ ନୀଳକଣ୍ଠଙ୍କ ଜୀବନୀ ଓ କୃତି : ଡ଼ଃ ଶ୍ରୀ ନରେନ୍ଦ୍ରନାଥ ମିଶ୍ର ।

୧୯ । The Prachi, Vol. I, Part IV, 1931.

Vol. II, Part I, 1932.

Vol. II, Part II, 1932.

Vol. III, Part I, 1933.

